THE ORIYA LANGUAGE TEXTBOOK SERIES

VOLUME THREE

# GRADED READINGS IN ORIYA

Selected and Edited by

Dan M. Matson

B. P. Mahapatra

Madison, Wisconsin 

The research reported herein was performed pursuant to a contract between Cornell University and the Office of Education, United States Department of Health, Education and Welfare, under the authority of Title VI of the National Defense Education Act.

## FOREWORD

The thirteen stories in this collection were selected because they (I hope) are not unduly difficult reading material for a westerner having some prior study of Oriya (several months to a year --depending on the nature and intensity of that study).

Almost equally important, these stories are widely known among Oriya-speaking people--almost any Oriya who sees this book will recognize some or all of them--and they have a particularly Orissan flavor about them which makes them more than just material for reading practice.

This collection and its companion glossary form the first part of the series of materials designed to follow my Basic Lessons in Oriya and The Oriya Writing System (published in a single binding as Materials for the Study of Oriya, East Lansing: Michigan State University Asian Studies Center, 1970); some students may profitably begin the early stories in this collection while still working in the earlier materials.

The order in which the stories are presented was determined on the basis of each story's length, the size and nature of its vocabulary, and--as far as we could measure--its grammatical complexity. This grading is intended to contribute maximally to the student's development of reading efficiency and vocabulary. To cash in on these possible benefits, runs the theory, it's necessary to work through the stories strictly in the order presented, without skipping any for any reason.

The glossary to these stories is bound separately from them, so that the reader may refer to it without repeatedly losing his place in the story. In order to take as much of the manual labor as possible out of the hands of the student, the entries in the glossary are arranged not alphabetically, but rather in the order in which the reader will need them as he works through the book. While there are numerous words which are glossed more than once in the glossary, most are glossed only at their first occurence; any other procedure would result in a glossary too thick to be manageable. Each entry in the glossary is keyed to the text by page and line numbers.

Since, in general, a word once glossed is not glossed again, it is important that the stories not be taken up out of order, which would be likely to result in one's encountering strange words not glossed which had occurred and been glossed in stories which one had skipped. (This is not part of a devilish plan to bend readers to my will: a dictionary for this book, alphabetically arranged, is planned but not yet begun. To date, the best practical Oriya-English dictionary is Baba Baidyanātha Pāḍhī, Bṛihata Oḍiā Abhidhāna, Cuttack: Friends Publishers, 1964.)

The stories were calligraphed by Jagabandhu Misra. The statistical basis for ordering the stories was gathered largely by Misra, Basant Kumar Das, and Bhikari Charan Naik, assisted by Prabodh Kumar Chand and Ambika Mohanty; their work was coordinated by my wife Susan, to whom a special debt is owed as I was not allowed to pay her for this full-time work. Fond thanks go also to Purnna Chandra Choudhury for a profusion of services rendered throughout the work in Puri.

Page and line citations for the glossary were done by Siba Narayana Mohanty, assisted by Kashinath Rout and Braja Das. The glossary was typed with admirable excellence by Michael M. T. Henderson. The art work for the covers is by Carol Henderson.

D. M. M.
Madison, June 1970

# ସୂଚିପତ୍ର


| | | | |
|---|---|---|---|
| | | Foreword | ii |
| * | ୧- | ସର୍ଗର ଦର୍ପଣ | ୧ |
| * | ୨- | ସୁନାପୁଅ କଥା | ୫ |
| * | ୩- | ଧାନଟି ଭିତରେ ଚାଉଳଟିଏ | ୧୨ |
| ** | ୪- | ଟଣଟଣି କି ବୁଦ୍ଧି କଲା | ୧୯ |
| * | ୫- | ମଂତ୍ରୀ ପୁଅ ସାଧବଝିଅ କଥା | ୨୪ |
| ** | ୬- | ଅଗରେ ଦ୍ୱାଣ୍ଡି ମୂଳରେ ନୂଳୀ ରଜା ଦେ, ତମ ବିଚାର ଭଲି | ୩୧ |
| * | ୭- | ବେଲଟୋ କନ୍ୟା କଥା | ୩୬ |
| ** | ୮- | ସେ ଝିଅ ଲଂକା ଜିଣିଲା | ୪୬ |
| * | ୯- | ମାତହାଣ୍ଡି କଥା | ୫୮ |
| ** | ୧୦- | ଗଜ ମୂର୍ଖ | ୬୮ |
| * | ୧୧- | 'ଦିଗୋଡିଆଂକୁ ବିଶ୍ୱାସ ନାହିଁ' | ୭୩ |
| * | ୧୨- | ଦି ସଂଗାତ କଥା | ୮୬ |
| ** | ୧୩- | ଦେଶ ଗଣ୍ଡିଆ, କଟକ ଟଣ୍ଡିଆ, ଘଣ୍ଟି ଟଣିଆ | ୧୦୮ |


* From ଗୋପାଳଚଂଦ୍ର ପ୍ରହରାଜ: ଉତ୍କଳ କାହାଣୀ
Cuttack: Cuttack Trading Co.; 2nd printing, 1964

** From କୁଂଜବିହାରୀ ଦାଶ: ଲୋକଗଳ୍ପ ସଂଚୟନ
Bhubaneswar: Oriya Sahitya Akademi, 1964

# ସ୍ୱର୍ଗର ଦର୍ପଣ

ଗୋପାଳ ଚନ୍ଦ୍ର ପ୍ରହରାଜ

ଗୋଟିଏ ଠକ ଥାଏ ଗୋ, ତା ବଂଶରେ ପୂର୍ବ ପୂର୍ବାନୁରୁ ଠକେଇ ବିଦ୍ୟା ଚାଲି ଆସୁଥାଏ । ସେ ଠକ ଅସି ବୁଢ଼ା ହେଲା । ତାର ଦି ପୁଅ ; ଦିନେ ତା ଦି ପୁଅଙ୍କୁ ଡାକି କହିଲା ; ଆରେ ପିଲାଏ ମୋ ଜଳ ବୟସ ଆସି ଗଲାଣି, ମୁଂ ଆସି ମାଟି ଖୋଜିଲଣି, ତୁମେ ଦିହେଁ ତ ଦିନେ ସୁଦ୍ଧା ଦାଣ୍ଡକୁ ବାହାରିଲ ନାହିଁ, ରହୁଁ ରହୁଁ ଆମ ବଂଶ ପାଠ ତ ବୁଡ଼ିଯିବ, ମୁଂ ଏଇଆ ବସି ଦିନରାତି ଭାବୁଛି ମୋ ପରେ ଆମ ନାଆଁ ବୁଡ଼ିଯିବ କିନା । ବଡ଼ ପୁଅ ବାହାରି ଯାଇ କହିଲା ; ମତେ ଟଙ୍କା ଶାହେଟି ଦିଅ କି ମୁଂ ଯାଉଛି । ବଡ଼ ପୁଅ ଟଙ୍କା ଶାହେଟି ନେଲା, ବୁଢ଼ା ଘୋଡ଼ାଟିଏ କିଣିଲା, ଲୁଗାପଟା କିଣିଲା, ବେଶ ହେଲା, ଘୋଡ଼ାରେ ଚଢ଼ି ଗଲା, ଯାଇ ପହଞ୍ଚିଲା ଏକ ରଜା ମୂଲକରେ । କହିଲା, ମୁଂ ଆସିଛି ଘୋଡ଼ା ମଣ କରିବି । ଏହା କହି ସେ ରଜାଘରେ ରହିଲା । ଏ ଘୋଡ଼ାଟିକି ରଜାଙ୍କ ଘୋଡ଼ାଶାଳରେ ବାନ୍ଧି ଦେଉଥାଏ । ସେଠି ରହିଲା ଦିନାକେତେ । ରଜାଙ୍କ ପକ୍ଷିରାଜ ପାଟ ଘୋଡ଼ାରେ ଚଢ଼ିବାକୁ ଯାହାଙ୍କୁ ଦିନେ ରଜା କହିଲେ । ଏ ସେ ପାଟଘୋଡ଼ା ଉପରେ କିମିତି ଚଢ଼ିଲା, କିମିତି ତା ପିଠିରେ ଦି ଚାବୁକ ଲଗେଇ ଦେଲା ଚଗ ଘୋଡ଼ା ଏକା ଡିଆଁକେ ଶହେ କୋଶ ଟପିଗଲା । ରଜା ତ ଚାହିଁଛନ୍ତି ଏ ଠକ ଫେରିବ ବୋଲି, ଠକ ପୁଅ ତ ଘୋଡ଼ା ଘେନି ଚୁ । ଘୋଡ଼ାକୁ ମାରିଦେଇ ଆଉ ଏକ ରଜା ରାଇଜରେ ପହଞ୍ଚିଲା, ସେ ରଜା ଯେମିତି ଏ ପକ୍ଷୀରାଜ ଘୋଡ଼ାକୁ ଦେଖିଲେ ଏ କହିଲା ମୁଂ ସଉଦାଗର ଆସିଛି ଏ ଘୋଡ଼ାକୁ ତୁମକୁ ଭେଟିବି ବୋଲି । ରଜା ଭାରି ଖୁସି ହେଲେ, ଯାହାକୁ ଟଙ୍କା ହଜାରେ, ଲୁଗାପଟା, ସୁନାରୁପା , ଖାଉଁଖରଚ ଦେଲେ । ସେ ପାଟ ଘୋଡ଼ାଟିକି ରଖିଲେ । ଏ

ଟଙ୍କା ପଇସାଗୁଡ଼ାକ ଧରିଲା, ଅଇଲା । ଘରକୁ ଆସି ବାପ ପାଖରେ ସବୁ ଦରବଗୁଡ଼ାକ ଥୋଇ ଗୋଡ଼ତଳେ ପଡ଼ିଲାରୁ ବାପ ସବୁ ହାଲଖବର ବୁଝିଲା ; ଭାରୀ ଖୁସି ହେଲା । ସେଇଥିରୁ ସାନ ପୁଅକୁ କହିଲା, ହଇରେ ବଡ଼ ଭାଇ ତ ଏତେକ ଆଣିଲା, ତୋ କରାମତି କ'ଣ ଅଛି ତୁ ଭଲା ଦେଖା । ମତେ ତ ଯାହା କୁହାଦିନେ ପୋଷିବ, ତା ଜଣା ଅଛି, ତୁମ ପୋଟ ଭଲା ତୁମେ ପୋଷି ଆମ ବଂଶର ନାଆଁ ରଖ । ସାନ ପୁଅ କହିଲା, ଭାଇଙ୍କି ତ ଟଙ୍କା ଖାଦ୍ୟ ଦେଲ, ମୁଁ ଟଙ୍କା ପଇସା କିଛି ମାଗୁ ନାହିଁ । ଯାହା କହୁ ଘରୁ ଅନୁକୂଳ କରି ବାହାରିଲା । ସେମିତିଏ ଗୋବର ଗାଡ଼ିରୁ ଗୋଟାଇ ଆଣି ବଡ଼ କରି ପିଣ୍ଡୁଳାଟିଏ କଲା ତା ମୁଣ୍ଡରେ ଖଣ୍ଡିଏ ଦର୍ପଣ ମାରିଲା, ତାକୁ ଆଚ୍ଛା କରି ଗହିର ପାଖୁଡ଼ାକ ପାଟକନା ରଙ୍ଗଚଙ୍ଗିଆ କରି ଗୁଡ଼େଇ ଦେଲା ଉପରେ ଦି ବହୁତ କରି ଖଣ୍ଡେ ପାଟକନା ପକେଇ ଦେଲା, ଗଲା ତାକୁ କାନ୍ଧରେ ବୋହେଇ । ଯାଇ ପହଞ୍ଚିଲା ଆଉ ଏକ ରଜା ମୂଲକରେ । ସେ ରଜାଙ୍କର ଲାଗିଛି କଚେରୀ, ମଣିଷ ଜମା ହୋଇଛନ୍ତି । ପାଞ୍ଚଗାଁରୁ ଗହ ଗହ ଶୁଭୁଛି । ପାତ୍ର ମନ୍ତ୍ରୀ ସାଥିକ କଟୁଆଳ ଆନ ଦେଖଣାହାରୀ ସୈନ୍ୟ ସାମନ୍ତ ପାଇକ ହାମସ୍ତେ, ପୂରିଛନ୍ତି । ଏ ଯାଇ କଚେରୀରେ ପହଞ୍ଚିଗଲା ରାଜାଙ୍କ ଆଗରେ ସେଇ ପିଣ୍ଡୁଳାଟିକି ଥୋଇ ଦେଲା । ରଜା ପଚାରିଲେ କହେ, ଏ କ'ଣ ? ଟୋକା କହିଲା, ମଣିମା ! ସେ, 'ସ୍ୱର୍ଗର ଦର୍ପଣ' ଯାହାଙ୍କ ବାପ ମା ମରିଛନ୍ତି, ସେ ସ୍ୱର୍ଗରେ କିମିତ ଆନନ୍ଦରେ ଅଛନ୍ତି, କି ଦୁଃଖରେ ଅଛନ୍ତି, ଯାହା ଭିତରକୁ ଚାହିଁଲେ ପୁଅଙ୍କୁ ବାପ ମାଆ ଭଲ ହୋଇ ଦିଶିବେ । ରଜା କହିଲେ, ତେବେ ଆମ ବାପ ମା କ'ଣ କରୁଛନ୍ତି ଆମେ ଦେଖନ୍ତେ । ଏ କହିଲା, ମଣିମା ଏ କ'ଣ ସାହଜ କଥା ପଢ଼ିବକି ? ଟଙ୍କା ହଜାରେ ଦର୍ଶନୀ ନ ଥୋଇଲେ

ଏଥିରେ କିଛି ଦିଶିବ ନାହିଁ, ଖାଲି ଜାଲକାଲୁଆ ଦିଶିବ । ରଜା ତ ବାପ ମା'ଙ୍କୁ ଦେଖିବେ ବୋଲି ଉଚ୍ଛନ୍ନ, ରଜାଙ୍କୁ ଅବା ଟଙ୍କା ଅପୁରୁବ ? ମନ୍ତ୍ରୀଙ୍କୁ ଆଜ୍ଞା ଦେଲାରୁ ଏ ଠକା ଆଗରେ ଟଙ୍କା ହଜାରେ ଆଣି କୁଢେଇ ଦେଲା । ଟଙ୍କା କୁଢାଇଲାରୁ ରଜା ଚାହିଁଲେ ସେ ଦର୍ପଣରେ ବାପ ମାଆଙ୍କୁ ଦେଖିବାକୁ । ଏ ସେତିକିବେଳେ କହିଲା, ମହିମା ! ଏ ମୁକୁର ରହିଲେ କହିବି, ଏଥିରେ ଆଉ ଗୋଟିଏ କଥା ଅଛି । ଯାହାଙ୍କର ବାପର ଠିକଣା ନାହିଁ, ସେ ଏଥିରେ ଚାହିଁଲେ ତାଙ୍କୁ ବାପ ମା ଦିଶିବେ ନାହିଁ, ତୁଛା ତାଙ୍କୁ ଆପଣା ମୁହଁଟା ଦିଶିବ । ରଜା ଯାଇ ସେ ଦର୍ପଣରେ ଅନାଇଲା ବେଳକୁ ତାଙ୍କୁ ଖାଲି ଆପଣା ମୁହଁ ଦିଶିଲା, ବାପ ମା କେହି ଦିଶିଲେ ନାହିଁ । ରଜା ବିଚାରିଲେ ଏବେ ଆଚ୍ଛା କଥା ହେଲା ଆସି, ମୁଁ ଯେବେ ନାହିଁ କରୁଛି ମତେ ବାପ ମା ଦିଶିଲେ ନାହିଁ ବୋଲି, ତେବେ ଏଠି ଲୋକେ ତ ଜାଣିବେ ମୁଁ ଅଣବାପୁଆ ବୋଲି, ତାହା ହେଲେ ତ ମୋ ମହତ ସରିଲା ବୋଲି ଜାଣ । ଏ ଠକା ରଜାଙ୍କ ମନକଥା ଚଉରେଇ ସେତିକିବେଳେ ହସି ହସି ରଜାଙ୍କୁ ପଚାରିଲା, ମହିମା ! ତୁମ୍ଭଙ୍କ ବାପା ମା ସ୍ୱର୍ଗରେ କ'ଣ କରୁଛନ୍ତି ? ମହିମାଙ୍କୁ ଦିଶୁ ନାହାନ୍ତି କି ? ରଜା ତ ସେତେବେଳକୁ ମନେ ମନେ ଚକ୍ରର ହେଇଗଲେଣି । ରଜା ଲାଜକୁ ପୁଣି କହିଲେ, ହଁ ଦିଶୁଛନ୍ତି । ଆମ ବାପା ମା ତ ସ୍ୱର୍ଗରେ ଭାରି ଆନନ୍ଦରେ ଅଛନ୍ତି । ହେଇଥିରୁ ମନ୍ତ୍ରୀ ବିଚାରିଲେ ; ରଜା ତ ତାଙ୍କ ବାପ ମା'ଙ୍କୁ ଦେଖିଲେ, ଆମ ବାପ ମା କ'ଣ କରୁଛନ୍ତି ଆମେ ଟିକିଏ ଭଲା ଦେଖନ୍ତେ । ଯା କହି ସେ ଠକା ପାଖରେ ଆଣି ପୁଣି ହଜାରେ ଟଙ୍କା କୁଢେଇଲେ, ମନ୍ତ୍ରୀ ଦେଖିଲା ବେଳକୁ ତାଙ୍କୁ ତୁଛା ଆପଣା ମୁହଁଟା ଦିଶିଲା, ମନ୍ତ୍ରୀ ତ ଆଚ୍ଛା

ହରିରାଣୀରେ ପଢ଼ିଲେ । ବିଚାରିଲେ ; ରଜା କିମିତି ତାଙ୍କ ବାପ ମା'ଙ୍କୁ ଦେଖିଲେ ? ମତେ କାହିଁକି ମୋ ବାପ ମା ନ ଦିଶିଲେ ତେବେ କ'ଣ ମୁଁ ଅଣବାବୁଆ ? ଏ କଥା ତ ସମସ୍ତେ ଜାଣିଲେ ମୋ ମହତ ପଦାରେ ପଡ଼ିଯିବ ! ଏ ଟୋକା ପଚାରିଲା ଦେଖିଲ? ମନ୍ତ୍ରୀ କହିଲେ ; ହଁ, ଆଜ୍ଞା ! ଆମ ବାପ ମା ଭାରୀ ଖୁସିରେ ଭାରୀ ଆରାମରେ ସ୍ୱର୍ଗରେ ଅଛନ୍ତି । ସେ ଦେଖି ସାରି ତାଙ୍କ ଆସନରେ ଯାଇ ବସିଲେ । ସାଧବ ସେମିତି ଆଣି ଟଙ୍କା ହଜାରେ କୁଟରେ ଦେଲା, ସେ ଦର୍ପଣକୁ ଯାଇ ଚାହିଁଲାବେଳକୁ ଆପଣା ମୁହଁଟା, ଏତେ ଲୋକଙ୍କ ଆଗରେ ଯେବେ କହିବି, କିଛି ଦିଶିଲା ନାହିଁ ବୋଲି, ତେବେ ତ ଅଣବାବୁଆ ବୋଲି ପ୍ରଘଟ ହେଲେ କଥା ସରିଯିବ ! ସେ କହିଲା ଆଜ୍ଞା ! ଆମ ବାପା ମା ସ୍ୱର୍ଗରେ ଭାରୀ ଆରାମରେ ଅଛନ୍ତି । ଏଥର ରଜା ବିଚାରୁଥାନ୍ତି ସମସ୍ତେ ଦେଖିଲେ, ମତେ କିଆଁ ଦିଶିଲା ନାହିଁ ? ମୁଁ ତେବେ କଅଣ ଅଣବାବୁଆ ? ମନ୍ତ୍ରୀ, ସାଧବ ସିମିତି ସମସ୍ତେ, ଏ କଥା ବିଚାରୁଥାନ୍ତି । 'ଚୋର ମା ଲାଜେ ନ କାନ୍ଦେ, ଯୋବେ କାନ୍ଦେ, ଦୁଆର ଦେଇ କାନ୍ଦେ ।' କାହା କଥା କେହି କାହା ଆଗରେ ଲାଜରେ କହିବାକୁ ନାହାନ୍ତି । ଟୋକା ମାନଙ୍କୁ ଯେ ଚୋର । ପଚୁକୁ କର୍ଟୁଆଲ ଟଙ୍କା ହଜାରେ ଦେଇ ରଜା ମନ୍ତ୍ରୀ ସାଧବଙ୍କ ପରି ବାପ ମା'ଙ୍କୁ ଦେଖି ବୋଧ ହେଲାରୁ ଏ ଠକ ପୁଅ ଟଙ୍କା ଚାରି ହଜାର କାନରେ ବାନ୍ଧି ରଜାଙ୍କ ସମ୍ମୁଖରୁ ଆସିଲା । ଘରେ ଆସି ବାପ ପାଖରେ ଟଙ୍କାତକ ଗଦେଇ ଦେଲା । ବାପକୁ ଏ ସବୁ କଥା କହିଲା, ବାପ ଯା ଶୁଣି କହିଲା, ସାବାସ୍‌ରେ ପୁଅ । ସାନ ପୁଅକୁ ସାବାସ୍ ଧଣିଆ ଦେଲା, କହିଲା ମତେ ଜଣ ମୋ ପୁଏ । ବି ପୁଅଙ୍କୁ ଛୋଟ ଘର ଦୁଆର କଲା

# ସୁନାଫୁଲ କଥା

ଗୋପାଳ ଚନ୍ଦ୍ର ପ୍ରହରାଜ

ଏକ ଦେଶରେ ଗୋଟିଏ ସାଧବ ଥାଏ ଲୋ, ସେ ସାଧବର ସାତ ପୁଅ, ସାତ ବୋହୂ। ଗୋଟିଏ ଝିଅ ଥାଏ, ସେ ଝିଅଟି ନାଁ ସୁନାଫୁଲ। ସାଧବର ସାତ ବୋହୂଯାକ ବଡ଼ ରୁଚିରେ ଗୋଖରୀକୁ ଗାଧୋଇ ଯାଆନ୍ତି, ସୁନାଫୁଲଟି ତ ଭାଉଜମାନଙ୍କ ସାଙ୍ଗରେ ଗାଧୋଇ ଯାଏ। ଦିନକର ଗୋଖରୀ କୂଳରେ ସାତ ଭାଉଜଯାକ ସୁନାଫୁଲକୁ କହିଲେ, ହଇ ଲୋ ସୁନାଫୁଲ ତୁମ ନାଆଁଟି ତ ସୁନାଫୁଲ, ତୁମେ ଝଡ଼ି ସୁନାଫୁଲର ଗୁଚ୍ଛିଏ ଫୁଟନ୍ତ ଲୋକେ ଆମେ ମୁଣ୍ଡରେ ପିନ୍ଧନ୍ତୁ। ସୁନାଫୁଲ କହିଲା, ହଉ ତେବେ ଶୁଣ ଆମ ଅଗଣା ଭିତରେ ଗୋଟାଏ ଗାତ କରିବା, ମୁଁ ସେ ଗାତ ଭିତରେ ପଶିବି, ତୁମେ ମୋ ଉପରେ ମାଟି ଘୋଡାଇ ଦବ, ମୁଁ କାଲି ସକାଳକୁ ଗଛେ ସୁନାଫୁଲ ଫୁଟି ଥିବି। ତୁମେ ଜଳ ଚିଡ଼ିଦେଇବ ନାହିଁ, କି ପାଦରେ ଚିଡ଼ିଦେଇବ ନାହିଁ, ଧୀରେ ଧୀରେ କରି ସବୁ ଫୁଲଙ୍କ ତୋଳି ସାରିବ, ସତେ ଡାକିବ – 'ଉଠ ଗୋ ସୁନାଫୁଲ'– ମୁଁ ତୋର ଜୀଇଁ ମଣିଷ ହୋଇଯିବି। ସାତ ଭାଉଜମାନଙ୍କୁ ସାଙ୍ଗରେ ନେଇ ସୁନାଫୁଲ ଘରକୁ ଆସିଲା, ଅଗଣା ଭିତରେ ଗୋଟାଏ ଗାତ ଖୋଳା ହେଲା, ତା ଭିତରେ ସୁନାଫୁଲ ପଶିଲା, ସାତ ଭାଉଜଯାକ ତା ଉପରେ ମାଟି ଘୋଡାଇ ଦେଲେ, ମିଛ ବିଷୟର କଥାବାର୍ତ୍ତା ହେଲେ– ସତରେ ଏ ଗୁଡାଏ ସୁନାଫୁଲ ଫୁଟିବ ପରା? ଏ କଥା ଭାଉଜମାନେ କହି ସେଠାରୁ ଫେରି ଆସିଲେ, ତା ଆରଦିନ ଅନ୍ଧାରରୁ ସେଠିକି ଭାଉଜମାନେ ଗଲା ବେଳକୁ ସତକୁ ସତ ଗଛଟିଏ ହୋଇ ସେ ଗଛରେ ଭାରି ସୁନ୍ଦର ସୁନାଫୁଲ ଗୁଚ୍ଛିଏ ଗଛେ ଫୁଟିଛି। ଭାଉଜମାନେ ଏ କଥା ଦେଖି

ଭାଗ୍ୟ ଖୁସି ହୋଇ ପତ୍ର ଛିଡ଼ାଇଲେ ନାହିଁ, କି ଡାଳ ଛିଡ଼ାଇଲେ ନାହିଁ । ସେ ନିମିତ୍ତ ଭାଉଜମାନଙ୍କୁ କହୁଥିଲା, ଭାଉଜମାନେ ସିମିତ ଥରେ ଥରେ କହି ସବୁ ଫୁଲଙ୍କ ଡାକି ସାରି ସୁନାଫୁଲକୁ ଡାକିଲେ 'ଉଠ ଗୋ ସୁନାଫୁଲ'। ମା' କହିବା ମାତ୍ରକେ ସୁନାଫୁଲ ସେ ଗଛ ଭିତରୁ ଉଠି ଆସି ସାତ ଭାଇଙ୍କୁ କହିଲା, ଏବେ କେତେ ଫୁଲ ପିନ୍ଧିବ ପିନ୍ଧ। ମା' କହି ସୁନାଫୁଲ ନିଜେ ଗୁଡ଼ିଏ ସେ ଫୁଲରୁ ମୁଣ୍ଡରେ ପିନ୍ଧିଲା। ସାତ ଭାଇଙ୍କୁ କେତେ ଗୁଡାଏ ସୁନାଫୁଲ ନେଇ ଦେଲା। ଇମିତିକା ବହୁତ ସକାଳୁ ଗଛରୁ ଲେଖାଏଁ ଫୁଲ ଫୁଟୁଥାଏ। ଦିନକର ସୁନାଫୁଲ ମୁଣ୍ଡରେ ଗୁଡ଼ିଏ ସେ ଫୁଲରୁ ପିନ୍ଧି ପାଣିକୁ ବୁଲି ଯାଉଛି, ଏଣେ କ'ଣ ହେଉଛି ନା, ରଜା ଘର ସାଉକ, କଟୁଆଳ, ପାତ୍ର, ମନ୍ତ୍ରୀଙ୍କ ସାଙ୍ଗରେ ଢେର ବଜେ ହୋଇ ଆସୁଛନ୍ତି। ସୁନାଫୁଲ ତ ପାଣିରେ ବୁଲୁଥିଲା, ଏ ରଜାଙ୍କ ସୈନ୍ୟ ସାମନ୍ତ ଦେଖି ସେ ଡରିକରି ହୋଇ ଘରକୁ ପଳାଇ ଆସୁ ଆସୁ ତା ମୁଣ୍ଡରୁ ଗୋଟାଏ ଫୁଲ ପାଣି ମଝିରେ ଖସି ପଡ଼ିଲା। ତା ସେ ନ ଜାଣେ, ଘରକୁ ପଳାଇ ଆସିଲା। ସୁନାଫୁଲର ବାଟ ସାଉକ ତ ରଜାଙ୍କ ପାଖରେ ଥାଏ। ରଜା ମଝି ପାଣିରେ ତ ଯାଉଛନ୍ତି, ସେ ସାଉକ ଦୁଆରକୁ ଚାହିଁ ଦେଲା ବେଳକୁ ଦେଖିଲେ, ଭାରି ସୁନ୍ଦର ଫୁଲଟିଏ ସାଉକ ଦୁଆରେ ପଡ଼ିଛି। ରଜା ସାଉକକୁ ଡାକି କହିଲେ, ସାଉକ! ତୁମ ଦୁଆରେ ହେଇଟି ଗୋଟିଏ ଫୁଲଟି ପଡ଼ିଛି ଭାରି ଜକଜକ ଦିଶୁଛି, ଆଣିଲ, ଦେଖିବା କି ଫୁଲ ସେ। ସାଉକ ଯାଇ ତାଙ୍କ ଦୁଆରୁ ସେ ଫୁଲଟିକୁ ରଜାଙ୍କୁ ଆଣି ଦେବାରୁ, ରଜା ସେ ଫୁଲଟିକୁ ଦେଖି କହିଲେ, ହଇ ହେ, ତୁମ

ଦାଣ୍ଡପିଣ୍ଡାରେ ଏ ସୁନାଫୁଲ କେଉଁଠୁ ଖସି ପଡ଼ିଥିଲା ନା ? ସାଧବ କହିଲେ, ମହିମା ! ମୁଁ ସେ କଥା ଜାଣେ ନାହିଁ, ପିଲାଙ୍କୁ ପଚାରି କହିବି । ରଜା କହିଲେ, ସାଧବ ! ତୁମେ ଯେବେ କାଲି ଏତେବେଳକୁ ଏ କଥା କହିବ ତ କହିବ, ନ କହିଲେ ତୁମ ବଂଶନାଶକରି ମୁଣ୍ଡକାଟ ହେବ । ସାଧବ ଏ କଥା ଶୁଣି ଅରହର ହୋଇ ତା ଘରକୁ ଯାଇ ଭାରିଯାକୁ ପଚାରିଲା, ହଇଲୋ, ଆମ ଦାଣ୍ଡ ପିଣ୍ଡାରେ ଗୋଟାଏ ସୁନାଫୁଲ କେଉଁଠୁ ପଡ଼ିଥିଲା ? ରଜା ବଡ଼ ହୋଇ ଆସୁଥିଲେ, ସେ ଫୁଲଟିକୁ ପାଇକରି ନେଲେ । ମତେ ପଚାରିଲେ, ଯେ ଦାଣ୍ଡପିଣ୍ଡାରେ ଏ ସୁନାଫୁଲ କେଉଁଠୁ ପଡ଼ିଲା, ତୁ ଯେବେ କାଲି ଏତେବେଳକୁ କହିବୁ ତ କହିବୁ, ନ କହିଲେ ତୋ ବଂଶନାଶ ପାତ କରିଦେବି । ସାଧବ ସାଧବାଣୀ ତ ଏତେ କଥା ଜାଣନ୍ତି ନାହିଁ। ସାଧବାଣୀ କହିଲା ତୁନୀ ହୁଅ ନା, ଆମ ଦାଣ୍ଡ ପିଣ୍ଡାରେ ସୁନାଫୁଲଟାଏ ପୁଣି କେଉଁଠୁ ପଡ଼ିଥିଲା ନା ? ଏଡ଼େ ମିଛ କଥା ତୁମେ କାହିଁକି କହୁଛ ? ସାଧବ ଏ କଥା ଭାରିଯା ତୁଣ୍ଡରୁ ଶୁଣି ମୁଣ୍ଡରେ ହାତ ଦେଇ କାନ୍ଦ କାନ୍ଦ ହୋଇ ସେଠୁଁ ଉଠିଗଲା, ଗୋଟାଏ ଘରେ କବାଟ କିଳି ନ ଖାଇ ନ ପିଇ ଭାରି ମନଦୁଃଖରେ ଶୋଇଲା । ସୁନାଫୁଲ କୁଆଡ଼େ ଖେଳିବାକୁ ଯାଇଥିଲା । ସେ ଖେଳି ସାରି ଘରକୁ ଫେରି ଆସିଲା ବେଳକୁ ତା ମା ବସିକରି କାନ୍ଦୁଛି । ସୁନାଫୁଲ ତା ମା'କୁ ପଚାରିଲା କାହିଁକି କାନ୍ଦୁଛୁ ? ମା କହିଲା— ଆରେଲୋ, କାଲି ଏତେବେଳକୁ ରଜା ଆମ ବଂଶନାଶ ତ ପାତ କରି ସାରିଥିବେ, ତୋ ବାପା ନ ଖାଇ ନ ପିଇ କବାଟ କିଳି ଶୋଇଲେଣି । ସୁନାଫୁଲ କହିଲା, ମା, କାହିଁକି ରଜା ମୁଣ୍ଡ କାଟିବେ ନା ! ରଜା ଯେଉଁ

କଥା ପାଇଁ ସାଧବକୁ ମୁଣ୍ଡ କାଟିବେ ବୋଲି କହୁଥିଲେ, ସୁନାଫୁଲ ଆଗରେ ତା ମା ସବୁ କଥା କହିଲାରୁ ସୁନାଫୁଲ ସେଠୁଁ ଦଉଡ଼ି ଯାଇ ବାପାକୁ କହିଲା — ବାପା ! ଏଇ ଛାର କଥା ତ, ଏଥିପାଇଁ ଏତେ ଚିନ୍ତା ପଡ଼ିଛି ? ରଜାଙ୍କ ଆଗରେ ଯାଇ କହିବ ଯେ, ମୋ ଝିଅ ନିଜେ ସକାଳକୁ ନିତି ଗଚ୍ଛେ ଲେଖାଏ ସୁନାଫୁଲ ଫୁଟେ, ତା ସାତ ଭାଉଜମାନେ ଓ ସେ ନିଜେ ସେ ସୁନାଫୁଲ ନିତି ମୁଣ୍ଡରେ ପିନ୍ଧନ୍ତି । ଏବେ ଆସ ଭାତ ଖାଇବ । ସାଧବ ଏ କଥା ଶୁଣି ମହା ଆନନ୍ଦରେ ତରବର ହୋଇ ସେ ଘରୁ ଉଠି ଆସି ଭାତ ଖାଇଲା । ତା ଆରଦିନ ସକାଳୁ ରଜାଙ୍କ ଆଗରେ ଯାଇ କହିଲା, ଆଜ୍ଞା, ମଣିମା ! ମୋ ଝିଅଟି ନାଁ ସୁନାଫୁଲ, ସେ ନିତି ସକାଳୁ ସୁନାର ଫୁଲଗୁଡ଼ିଏ ଫୁଟେ । ରଜା କହିଲେ, ହଉ ହେ ସାଧବ । ତୁମ ଝିଅଟି ନିଜେ ଏତେ ସୁନ୍ଦର ସୁନାଫୁଲ ଫୁଟେ । କାଲି ସକାଳକୁ ମୋ ପାଖରେ ତୁମେ ଆଣି ଦୁଇ ଭାର ସେ ଫୁଲରୁ ନିଶ୍ଚେ ଦେବ । ସାଧବ ନଅରରୁ ଫେରି ଆସି ରଜାଙ୍କ ଆଦେଶ କଥା ଝିଅ ଆଗରେ କହିଲା, ସୁନାଫୁଲ ! ରଜା ମାଗିଛନ୍ତି ତୁ କାଲି ଦୁଇ ଭାର ସୁନାଫୁଲ ଫୁଟିବୁ, ରଜା ନେବେ । ସେ ଦିନ ରାତି ହେଲାରୁ ସୁନାଫୁଲ ଯାଇ ସେ ଗାତ ଭିତରେ ପଶିଲା, ସେ ଗାତ ଉପରେ ତା ମା ମାଟି ଘୋଡାଇ ଦେଲା; ସକାଳୁ ଦେଖିଲା ବେଳକୁ ଏତେ ବଡ଼ ଗଛ ହୋଇ ସେଥିରେ ଗଚ୍ଛେ ସୁନାଫୁଲ ଫୁଟିଛି । ସାଧବ ସବୁ ଫୁଲମାନ ତୋଳି ରଜାଙ୍କ ଘର ପାଇଁ ଭାର କଲାବେଳକୁ ଦୁଇ ଭାରକୁ ଗୁଣ ଭାର ଫୁଲ ହେଲା । ଦୁଇ ଭାର ତା ଘରେ ରହିଲା ଆଉ ଦୁଇ ଭାର ରଜାଙ୍କ ଘରକୁ ସାଧବ ନିଜେ ଭାରୁଆଙ୍କ ହାତରେ ନେଇକରି ଗଲା । ରଜା ଫୁଲ ଦେଖି

ବଡ଼ ଆଶ୍ଚର୍ଯ୍ୟ ହେଲେ, ସାଧବକୁ କହିଲେ, ଆମେ ତୁମ ଝିଅ ସୁନାଫୁଲକୁ ବିଭା ହେବା । ସାଧବ କହିଲା, ଆଜ୍ଞା ମୁଂ ଗୁର ! ମୋ ଝିଅକୁ ତୁମ୍ଭେ କଣ ବିଭା ହେବେ, ତୁମ୍ଭଙ୍କର ତ ବଡ଼ ରାଣୀ ଅଛନ୍ତି । ରଜା କହିଲେ, ହଁ ମୁଂ ତ ନିଶ୍ଚୟ ବିଭା ହେବି । ମୁଂ ତୁମ ଝିଅକୁ ରାଣୀ କରି । ଉତ୍ତମ ସୁନ୍ଦର ଉଆସରେ ରଖିବି । ଲକ୍ଷେ ଟୋଇଲୀ ଖଞ୍ଜି ଦେବି । ସାଧବ ସେଇଠୁ ଘରକୁ ଫେରିଗଲା । ଭାରି ଆଡମ୍ବରରେ ବିଭାଘର ହେଲା । ରାଇଜଯାକ ହୁରି ପଡ଼ିଗଲା, ରଜା ବିଭା ହେଲେ ସାଧବ ଝିଅକୁ ବୋଲି ଖିଆପିଆ, , ଗୀତ, ନାଟ, କିଆଦିଆ ସାତଦିନ ଯାକେ ଲାଗିଲା, ଟିକେ ଉତ୍ସବ ହେଲା । ଦିନକର ରଜା ସୁନାଫୁଲକୁ କହିଲେ, ହେ ! ତୁମେ ଘରେ ଥିବ, ମୁଂ ଗୋଟାଏ ଦେଶକୁ ଯାଉଚି । ଆଠ ଦିନେ ଆସିବି । ଏ କଥା ରଜା ସୁନାଫୁଲ ଆଗରେ କହି କରି ବିଦେଶ ଗଲେ । ଆରଦିନ ସକାଳୁ ସୁନାଫୁଲ ଉଆସ ପୋଖରୀକୁ ଗଲା ଗାଧୋଇ, ତା ସଙ୍ଗରେ ବଡ଼ ରାଣୀ ଗାଧୋଇ ଗଲା । ସୁନାଫୁଲ ଗାଧୋଉଛି ତା ମୁଣ୍ଡରେ ସୁନାଫୁଲ ଫୁଟିଏ ବଡ଼ ରାଣୀ ଦେଖି ତାକୁ ପଚାରିଲା, ହଇଲୋ, ଏ ସୁନାଫୁଲ ତ ଏତେଗୁଡାଏ ରଜା ତତେ ଦେଲେ, ମୋତେ ଏଟାଏ ଫୁଲ ଦିନେ ଗୋଟାଏ ଦେଇ ନାହାନ୍ତି ତ । ଏଥିପାଇ ସୁନାଫୁଲ ସଙ୍ଗେ ଭାରୀ କଳିଗୋଳ ଲଗାଇଲା । ସୁନାଫୁଲ ତ ଏତେ କଥା ଜାଣେ ନାହିଁ, ବଡ଼ ରାଣୀ ଆଗରେ କହିଲା, ନାହିଁ ମା, ମୋତେ ରଜା ଏ ଫୁଲ ଦେଇ ନାହାନ୍ତି, ଜନ୍ମ ସକାଳକୁ ମୁଂ ଗଛୁ ଲେଖାଏଁ ସୁନାର ଫୁଲ ଫୁଟେ ଯିମିତ ଗାତରେ ଯୋଗ ହେଲେ ସକାଳକୁ ସୁନାଫୁଲ ଫୁଟେ । ସେ

କଥାଟାକ ବଡରାଣୀଙ୍କ କହିଦେଲା । ବଡ଼ରାଣୀ ଏ କଥା ଶୁଣି ତା ସାଙ୍ଗରେ ଲଗାଇଲା — ହେ ହେ, ତୁ କିମିତି ସୁନାଫୁଲ ଫୁଟୁ, ଟିକିଏ ଫୁଟନ୍ତୁ, ମୁଂ ଦେଖନ୍ତି । ସୁନାଫୁଲ କହିଲା, ହଉ ଭଲ, ଆମ ଅଗଣା କୂଅ ପାଖରେ ଗାତଟାଏ କରିବା, ମୁଂ ସେ ଗାତ ଭିତରେ ପଶିବି, ତୁମେ ମୋ ଉପରେ ମାଟି ଘୋଡାଇ ଦେବ, ମୁଂ ସକାଳକୁ ଗଛେ ସୁନାଫୁଲ ଫୁଟିଥିବି, ତୁମେ ଫଳ ଛିଡ଼େଇବ ନାହିଁ କି ପତ୍ର ଛିଡ଼େଇବ ନାହିଁ, ସବୁ ଫୁଲଙ୍କ ତୋଳିସାରି, ମାଟେ ଡାକି ଦେବ ; 'ଉଠ ମୋ ସୁନାଫୁଲ' । ମୁଂ ଡାକ ଶୁଣିଲାରୁ ତୋର ମଣିଷ ହେଇଯିବି । ବଡ଼ରାଣୀ ଓ ସୁନାଫୁଲ ଘରକୁ ଆସି ଅଗଣାରେ ଗାତଟିଏ କଲେ, ସେ ଗାତ ଭିତରେ ସୁନାଫୁଲ ପଶିଲା, ତା ଉପରେ ବଡ଼ ରାଣୀ ମାଟି ଘୋଡାଇ ଦେଇ ତା ଆରଦିନ ସକାଳୁ ଯାଇ ଦେଖିଲା ବେଳକୁ ସତକୁ ସତ ଗଛେ ସୁନାଫୁଲ ଫୁଟିଛି । ଯା ଦେଖି ରାଗରେ ସେ ଫୁଲଙ୍କ ତୋଳି ପକାଇ କହୁଥାଏ – ତୋ ହାତ ଧରିଲା ଦିନୁ ରଜା ମୋ ମୁହଁ ଚାହିଁଲେ ନାହିଁ, ତୋ ମୁହଁ ପୋଂର ରଜାଙ୍କୁ ଏତେ ସୁନ୍ଦର ଦିଶିଲା । ଯା କହି ଡାଳ ପତ୍ରସବୁ ଛିଡ଼େଇ ଦେଇ ସେ କୂଅରେ ନେଇ ପକେଇ ଦେଲା । ରଜା ସେହିକ୍ଷଣି ଆସି ନଅରରେ ପହୁଁଚିଲେ । ସାନ ରାଣୀ ଦୁଆରରେ ନାହାନ୍ତି, ରଜା ଗୋଟେ ଖୋଜିଲେ, କେତେ ଲୋକଙ୍କୁ ପଚାରିଲେ । ଏ କଥା ବଡ଼ ରାଣୀ କରିଛି ବୋଲି କିଏ ଜାଣିଛି ଯେ ରଜାଙ୍କ ଆଗରେ କହିବ ? ରଜା କେତେ କାନ୍ଦିଲେ, କେତେ ବ୍ୟସ୍ତ ହୋଇ ତାଙ୍କ ହାତୀଦାନ୍ତ ପଲଙ୍କରେ ମୁହଁ ମାଡ଼ି ଶୋଇ କରି ସୁନାଫୁଲ ଗୁଣ ଗାଇ ଝୁରି ହେଉଥାନ୍ତି । ତା ଆର ଦିନ ସକାଳୁ ରଜାଙ୍କ ଚାକର ସେ

କୁଅକୁ ପାଣି ଆଣିବାକୁ ଗଲାବେଳକୁ କୂଅ ଭିତରେ ଗୋଟାଏ ଡାଳରେ ସୁନାଫୁଲଟାଏ ଫୁଟିଛି ଯେ, କୂଅ ପାଣିଯାକ ଝକଝକ ଦିଶୁଛି । ଚାକର ଯାଇ ରଜାଙ୍କୁ ଜଣାଇଲା , ମହିମା , ଉଆସ କୂଅରେ କି ଫୁଲଟାଏ ଫୁଟିଛି , ରଜା ଦେଖି ଆଜ୍ଞା ହୁଅନ୍ତୁ । ରଜା ସେହିକ୍ଷଣି କୂଅପାଖକୁ ବିଜେ କଲେ । ଦେଖିଲେ , ଡାଳଟାରେ ସୁନାଫୁଲ ଫୁଟିଛି । ରଜା ସେହିକ୍ଷଣି କୂଅକୁ ନିଜେ ଡେଇଁ ପଡ଼ି ସେ ଡାଳଟିକୁ ନେଇ ଆସି ତାଙ୍କ ଶୋଇବା ଘରେ ଗାତ କରି ପୋତିଦେଲେ । ସକାଳକୁ ଦେଖିଲା ବେଳକୁ ଗଛେ ସୁନାଫୁଲ ଫୁଟିଛି । ରଜା ସେ ଫୁଲକୁ ତୋଳି ପକାଇ ଡାକିଲେ — 'ଉଠ ଗୋ ସୁନାଫୁଲ' । ସତକୁ ସତ ଗଛଟି ସେହିକ୍ଷଣି ମଣିଷ ହୋଇଗଲା । ତାଙ୍କ ଆଗରେ ସୁନାଫୁଲ ରାଣୀ ବାହାରି ପଡ଼ିଲା । ରଜା ପଚାରିଲେ ତୁମକୁ ଏ ଦଶା କିଏ କଲା ? ଯାହା ଯାହା ବଡ଼ ରାଣୀ ସୁନାଫୁଲକୁ କରିଥିଲା ସୁନାଫୁଲ ସବୁ କଥା କହିଗଲା । ରଜା ଏ କଥା ଶୁଣି ଗୋଟିଏ ଗାତ ଖୋଳାଇ ବଡ଼ ରାଣୀକୁ ଉପରି କଣ୍ଟା , ତଳ କଣ୍ଟା କରି ପୋତାଇ ପକାଇଲେ । ସାନ ରାଣୀଙ୍କୁ ନେଇ ମହାଆନନ୍ଦରେ ଘର ଦୁଆର କଲେ । ମୁଁ ଗଲି ମୋ କଥା ନ କହିଲେ ।

# "ଧାନଟି ଭିତରେ ଗୁଡ଼ଳଟିଏ ।"

ଗୋପାଳ ଚନ୍ଦ୍ର ପ୍ରହରାଜ

ଆମ ମାମୁଁ ଘର ମୁଲକରେ ଏକ ରାଇଜଟେ, ସେ ରାଇଜରେ ରଜାପୁଅ ମନ୍ତ୍ରୀପୁଅ ଦୁହେଁ ସଙ୍ଗାତ ହେଲେ । ସେ ସବୁବେଳେ 'ଏକାଠି ଥାଆନ୍ତି । ', ଦଣ୍ଡକ ଲାଗି ଛୁଟିଆ ଦିହେଁ ଛଡ଼ାଛଡ଼ି ହୁଅନ୍ତି ନାହିଁ । ଦି ସଙ୍ଗାତ ଏକାଠି ଖାଆନ୍ତି, ଏକାଠି ଶୁଅନ୍ତି, ଏକ ଆସନରେ ବସନ୍ତି । ଦି ସଙ୍ଗାତ ବଡ଼ ହେଲେ, ତେବେ ଛୁଟା ଦିହିଙ୍କର ଦଣ୍ଡେ ଛୁଟା ଛାଡ଼ବାଡ଼ ହେବାକୁ ନାହିଁ । ଏ ତାକୁ ଦଣ୍ଡେ ନ ଦେଖିଲେ ପାଣି ପିଏ ନାହିଁ, କି ସେ ଏୟାକୁ ଦଣ୍ଡେ ନ ଦେଖିଲେ ପାଣି ପିଏ ନାହିଁ ।

। ରଜାପୁଅ ଏଣିକି ବଡ଼ ହେଲା, ରାଜ୍ୟ କଥା ବୁଝିବ, ଶୀକାର କରିବ, ଏ କଥା ସବୁ କେଉଁଆଡ଼େ ଗଲା ! ଦେଖିଲାବେଳକୁ ଦିନ ଚାରି ପହର ଠାରୁ ରାତି ଚାରି ପହର ଦି ସଙ୍ଗାତଙ୍କ ଭିତରେ ପାଣି ଗଳୁ ନାହିଁ । ଦିହେଁଙ୍କର ଏକୁଟିଆ ବସି, କି ରାତି କି ଦିନ, ସବୁବେଳେ କି ଦୁଃଖସୁଖ ହେଉଥାନ୍ତି, ତାହା ସେ ଦିନ ରାତି କରୁଛି ସେ ଜାଣେ । ରଜା ଦିନକୁ ଦିନ ଅଥି ବୁଢା ହେଲେ, ବିଚାରିଥିଲେ ସେ ଏଣିକି ପୁଅ ପାଖରେ ସବୁ କାମ, ପକାଇ ଦେଇ ସେ ନିକିଏ ନିଶ୍ଚିନ୍ତ ହୋଇ ବସିବେ, ତାଙ୍କୁ ନିଶ୍ୱାସ ମାରିବାକୁ ଫୁରୁସତ ହେବ । ଏଣେ ଦେଖିଲାବେଳକୁ ଏମିତି ଅବସ୍ଥା ! ସଙ୍ଗାତ ସାଙ୍ଗ ଛାଡ଼ିବେ, ନା ରଜାପୁଅ ରାଇଜକାମରେ ମୁହାଁଇବେ ? ଏ କଥା ଚିନ୍ତି ରଜା ଭାରି ବ୍ୟସ୍ତ ହେଲେ । ପୁଅକୁ ତାଙ୍କ କେତେ ବୁଝାଇଲେ, କିନ୍ତୁ ସୋଡେ ବୁଝାଇଲେ, ରଜାପୁଅ ତ ଅବୁଝା,

ସେ ସନ୍ଥାଙ୍କର ସାଙ୍ଗ ଛାଡ଼ିଲା ନାହିଁ । ବୁଢ଼ିଲା ବେଳକୁ ଆଗେ ଯାହା ରଜାପୁଅ ଉଆସକୁ ଖାଇବାକୁ ବିଜେ କରୁଥିଲା, ତା ବି ବନ୍ଦ ହେଲା— ବାପ ଆଉ ମତେ ଦେଖିବେ, ନା ସନ୍ଥାଙ୍କ ସାଙ୍ଗ ଛାଡ଼ିବାକୁ କହିବେ ! ପାତ୍ର, ମନ୍ତ୍ରୀ, ସାଉକାର, କର୍ଣ୍ଣ ଆଦି ସମସ୍ତେ, ଏ ଦି ସନ୍ଥାଙ୍କ ଢଙ୍ଗ ଦେଖି କାନ୍ଦା ହେଉଥାନ୍ତି । ଦିନେ ରଜା ମନ୍ତ୍ରୀଙ୍କୁ ଡାକି କହି ଆଜ୍ଞା ଦେଲେ କି, ହେଇହେ ମନ୍ତ୍ରୀ ! ତୁମ ପୁଅ ଯୋଗୁଁ ସିନା ଆମ ପୁଅଟି ମାଟି ହେଲା, ଆମ ରାଇଜଟି ସିନା ନଷ୍ଟ ହୋଇଗଲା ! ତୁମ ପୁଅକୁ କହ ଯେ ସେ ମୋ ପୁଅ ସାଙ୍ଗ ଛାଡୁ, ନଇଲେ ତୁମକୁ ସବଂଶରେ ରାଇଜରୁ ବାହାର କରି ଦେବି । କଥା ଶୁଣି ମନ୍ତ୍ରୀ ଯାଇ କେତେ ପ୍ରକାରେ ଆପଣା ପୁଅକୁ ବୁଝାଇଲେ, ସେ କି ରଜାପୁଅ ସାଙ୍ଗ ଛାଡ଼ିଲା ନାହିଁ, ଦେଖିଲାବେଳକୁ ଦିହେଁଯାକ ଦିନକୁ ଦିନ ଆଗଠାରୁ ବେଶୀ ବେଶୀ ସାଙ୍ଗ ହେଲେ । ମନ୍ତ୍ରୀ ଶେଷକୁ ପୁଅକୁ କହିଲେ, ତୁ ଏ ରାଇଜରୁ କୁଆଡ଼େ ଗୁଚିଯା । ମନ୍ତ୍ରୀପୁଅ ରାଜ୍ୟ ଛାଡ଼ି ଯିବାପାଇଁ ସଜବାଜ ହେଲା ବେଳକୁ ରଜାପୁଅ ତା ସାଙ୍ଗରେ ଯିବାକୁ ବାହାରିଲା, କହିଲା,— ସନ୍ଥାଙ୍କ ! ଯୋଉଁଆଡ଼େ ଯିବ, ଚାଲ, ମୁଁ ବି ତୁମ ସାଙ୍ଗେ ସାଙ୍ଗେ ଯିବି । ଏ କଥା ଦେଖି ସମସ୍ତେ କାନ୍ଦା ହେଉଥାନ୍ତି । ଏଣେ ରଜାପୁଅକୁ ଆକଟ କଲା ଦିନରୁ ରଜାପୁଅ ଆଉ ଉଆସ ମାଡ଼ିବାକୁ ନାହିଁ । ଏଥିଯୋଗୁଁ ରାଣୀ କେତେ କାନ୍ଦୁଥାନ୍ତି ଓ ଦିନ ରାତି ଚିନ୍ତା କରୁଥାନ୍ତି, କିମିତି ଏ ଦି ସନ୍ଥାଙ୍କର ଛଡ଼ାଛଡ଼ି ହୋଇ ଯାଆନ୍ତା କି ? ପଛକୁ ରଜା ଆଜ୍ଞା କଲେ କି, ଯେ ଏ ଦି ସନ୍ଥାଙ୍କୁ ଛଡ଼ାଛଡ଼ି କରି ଦବ, ତାଙ୍କୁ ବହୁତ

ଟଙ୍କାପଇସା , ଜମି ବାଡ଼ି , ଗାଆଁ ଗଣ୍ଡା ଦିଆ ଗଲା ,
। ଏହିପରି ଥାଏ । ରାଜାଙ୍କ ଉଆସକୁ ଫୁଲ ଦେବା ଲାଗି ଗୋଟିଏ ମାଲୁଣୀ ବୁଢ଼ୀ ଯା ଆସ କରେ । ଏ କଥା ଦିନେ ତା କାନରେ ପଡ଼ିଲା । ସେ ଶୁଣିଲାକ୍ଷଣି ଯାଇ ମନ୍ତ୍ରୀମାନଙ୍କୁ ପଚାରିଲା , ରାଣୀ କହି ଆଜ୍ଞା ଦେଲେ କି , ଯେ ଏ ଦି ସଙ୍ଗାତଙ୍କୁ ଛାଡ଼ିବାଡ଼ି କରି ଦେବ , ତାକୁ ଆମେ ବହୁତ ଟଙ୍କା ପଇସା ଦେବା । ଏ କଥା ଶୁଣି ମାଲୁଣୀ ବୁଢ଼ୀ ମନେ ମନେ ବିଚାରିଲା ଯେ , ଏତେ , ଗୁଣିଆ ଏତେ ତ ଅଙ୍କ ଗଲେଣି ମୁଁ ଭଲା ଥରେ ଏ ଦି ସଙ୍ଗାତଙ୍କ ମନକୁ ଫଂଟାଇବାର ଯୋଗାଡ଼ କରିନି ! ଏହା ଶୁଣି ସମସ୍ତେ ତାକୁ ହସରେ ଉଡ଼ାଇ ଦେଲେ ,
ହେଲେ
ପଚୁକୁ ଆଉ ତ କିଛି ଉପାୟ ଦିଶିଲା ନାହିଁ । ରାଣୀ ମାଲୁଣୀ ବୁଢ଼ୀକୁ ଆଜ୍ଞା ଦେଲେ , " ଆଚ୍ଛା ; ବଡ଼ ବଡ଼ମାନେ ତ ପାରିଲେ ନାହିଁ , ତୁ ଭଲା ତୋ ଯୋଗାଡ଼ରେ ଲାଗେ । ମାଲୁଣୀ ବୁଢ଼ୀ ରାଣୀଙ୍କ ଠାରୁ ଆଜ୍ଞା ପାଇ ସେ ଦିନ ତା ଘରକୁ ଗଲା । ତହିଁ ଆର ଦିନ ରାଜାଙ୍କ ଉଆସକୁ ଫୁଲ ଫୁଲ ନେଇ ଅଇଲାବେଳେ ଦି ସଙ୍ଗାତ ଯେଉଁ ଜାଗାରେ ବସଉଠ କରୁଥାନ୍ତି , ଏ ମାଲ୍ୟାଣୀ ସେହି ବାଟେ ଅଇଲା । ନଅରରୁ ଫେରିଲା ବେଳକୁ ବି ସେହି ଦି' ସଙ୍ଗାତଙ୍କ ବାଟ ଦେଇଗଲା । ଏହିପରି ଦି' ଚାରିଦିନ ଯିବା ଆସିବା କରୁଚି , ଦି' ସଙ୍ଗାତଙ୍କର ସେ ମାଲୁଣୀ ବୁଢ଼ୀ ଉପରେ ନଜର ପଡ଼ିଲା । ଦିହେଁ ଯାକ ଆପଣା ଆପଣା ଭିତରେ ବିଚରା ବିଚାର ହେଲେ ଏ ମାଇକିନିଟି ଏବେ କିଆଁ ଆମର ବାଟେ କାହିଁକି ଯା' ଆସ କରୁଚି ? ତାକୁ ଡାକି କରି ପଚାରିଲେ ଯେ , ସେ ପାଟି

ଫିଟାଇଲା ନାହିଁ । ପରେ ଦିନାକେତେ ଗଲା, ଏ ମାଲ୍ୟାଣୀ ଯେଉଁ ବାଟେ ଦି' ସଙ୍ଗାତଙ୍କ ପାଖ ଦେଇ ଯା' ଆସ କରୁଥାଏ । ଦିନେ ସେଇ ବାଟେ ଯାଉଛି, ଦେଖିଲା ତ, ମନ୍ତ୍ରୀପୁଅ ତା' ଆଡ଼କୁ ଅନାଉଛି । ଯିମିତ ଦେଖିଲା ତ ମନ୍ତ୍ରୀପୁଅ ତା' ଆଡ଼କୁ ଚାହୁଁଛି, ସିମିତକା ମାଲୁଣୀ ମନ୍ତ୍ରୀପୁଅକୁ ତା ପାଖକୁ ହାତ ଠାରି ଡାକିଲା । ମନ୍ତ୍ରୀପୁଅ ରଜାପୁଅକୁ କହିଲା — ସଙ୍ଗାତ ! ମାଲୁଣୀକୁ ତ ଏତେ ପଚାରିଲେ ସେ ପାଟି ଫିଟାଇଲା ନାହିଁ ; ଆଜ ତା ମନକୁ କାହିଁକି ମତେ ଠାରୁଛି, କେଜାଣି ତା ମନ କଥା ଖୋଲି କରି କହିବ ଅବା ? ରଜାପୁଅ କହିଲା — ଆଚ୍ଛା, ସଙ୍ଗାତ ! ତୁମେ ତା ପାଖକୁ ଯାଇ ଶୁଣି ଆସ । ମୋ ରାଣ, ସେ ଯାହା କହିବ, ତୁମେ ମତେ ଲୁଚାଇବ ନାହିଁ ? ଏହା ଶୁଣି ମନ୍ତ୍ରୀପୁଅ ସଙ୍ଗାତ ପାଖରୁ ଉଠିଗଲା ମାଲୁଣୀ ପାଖକୁ । ମାଲୁଣୀ କୁଟୀ କିଛି ଦୂରରେ ଛିଡ଼ା ହୋଇଥାଏ । ମନ୍ତ୍ରୀପୁଅ ଯିମିତକା ତା' ପାଖରେ ପହଞ୍ଚିଲା, ମାଲୁଣୀ କୁଟୀ ଟିକିଏ ସେ ପଟକୁ ଡାକି ନେଇ ଦିହେଁ ଏକାନ୍ତ ହେଲାକ୍ଷଣି ମନ୍ତ୍ରୀପୁଅ କହିଲା, ହଇଲେ ! କି କଥା କହିବାକୁ ମତେ ଏଠିକି ଡାକି ଆଣିଲୁ ? ମାଲୁଣୀ କହିଲା — ମୁଣ୍ଡ ରହିଲେ ତୁଣ୍ଡ କହିବ । ମୁଁ ବହୁତ ଖୋଜିଲିଣି, ଗୋଟିଏ କଥାର ମରମ ମତେ ମିଳିବାକୁ ନାହିଁ, ବିଚାରିଲି ତ, ଏ ଦି' ସଙ୍ଗାତଙ୍କୁ ଅବା ଏ କଥା ପଚାରିଲେ ସେ ଏ କଥାର ମରମ କହିବେ ? ମନ୍ତ୍ରୀପୁଅ ଏ କଥା ଶୁଣି ମାଲୁଣୀକୁ କହିଲା, କିଛି ଡର ନାହିଁ, ତୁ ତୋ ମନ କଥା ଖୋଲି କରି କହ । ଏହା ଶୁଣି ମାଲୁଣୀ ପଚାରିଲା — "ପାନଟିଏ, ପାନଟି ଭିତରେ କ'ଣ ଟିଏ ?" ମନ୍ତ୍ରୀପୁଅ ଏ କଥା ଶୁଣି ଆଉ ସମ୍ଭାଳି ପାରିଲା ନାହିଁ, ଠୋ ଠୋ ହୋଇ ହସି ଉଠିଲା,

ପରେ ଗୋଟାଏ

କଥା । ଏ କଥାଟା କିଏ ନ ଜାଣେ ଗୋ ? ଅନେକାଏ, ଅନେକା ଭିତରେ ଗୁଡ଼ଲେଣ୍ଟାଏ । ମାଲୁଣୀ ଏହା ଶୁଣି କହିଲା, ମୋ ଖୋଜିଲା କଥା ମୁଁ ପାଇଲି ଗୋ, ଏବେ ତୁମେ ତୁମ ସାଙ୍ଗାତଙ୍କ ପାଖକୁ ଯାଅ । ହେଲେ, ମୋ ରାଣ ! ଏ କଥା ତୁମ ସାଙ୍ଗାତଙ୍କୁ କହିବ ନାହିଁ ? ମନ୍ତ୍ରୀପୁଅ ତ ଏ ମାଲୁଣୀର ଓଲୁ ପଣିଆ ଦେଖି ହସି ହସି ଲୋଟି ଯାଉଥାଏ । ଏ କଥାବାର୍ତ୍ତା ସରିଲାରୁ ମାଲୁଣୀ ତା ଆସ୍ ଆଡ଼କୁ ଗଲା । ମନ୍ତ୍ରୀପୁଅ ସାଙ୍ଗାତ ବସିବା ଥାନକୁ ଫେରି ଅଇଲା । ଏଣେ ରଜାପୁଅ ଏକ ଧ୍ୟାନରେ ସାଙ୍ଗାତର ଫେରିବା ବାଟକୁ ଚାହିଁକରି ବସିଚି — ମାଲୁଣୀ କାହିଁକି ସାଙ୍ଗାତକୁ କି ବିଶ୍ୱାସ କଥା କହିବ ବୋଲି ଏକାନ୍ତ ଥାନକୁ ଡାକି ନେଲା ? ମତେ ନ ଡାକି ସାଙ୍ଗାତକୁ କିଆଁ ଡାକିଲା? ସାଙ୍ଗାତ ଆସ୍, ମତେ ସବୁ କଥା କହିବ ଗୋ ! ଏହା ବିଚାରି ରଜାପୁଅ ମନେ ମନେ ଭାବୁଚି, ଏହି ସମୟରେ ମନ୍ତ୍ରୀପୁଅ ତେଣୁ ହସି ହସିକା ଆସି ସାଙ୍ଗାତ ପାଖରେ ପହଞ୍ଚିଲା । ରଜାପୁଅ ତାଙ୍କୁ ପଚାରିଲା ସାଙ୍ଗାତ ! ମାଲୁଣୀ ତୁମକୁ କି କଥା କହିଲା ? ମନ୍ତ୍ରୀପୁଅ କହିଲା — ସାଙ୍ଗାତ ! ମତେ ମାଲୁଣୀ ରାଣ ପକାଇ ଥିଲା, ସାଙ୍ଗାତଙ୍କ ଆଗରେ ସେ କଥା ମୁଁ ଫିଟାଇବି ନାହିଁ ବୋଲି । ହେଲେ କଅଣ ହେବ, ମୁଁ କି ତୁମ ଆଗରେ କେଉଁ କଥା ଲୁଚାଇ କରି ରଖିପାରେ ? ସେ ଏ କଥାଟା ନ ଖୋଲିବି ? ଏହା ଶୁଣି ରଜାପୁଅ ତ ମାଲୁଣୀ କଥା ଶୁଣିବାକୁ ବେଶୀ ଉଚ୍ଛନ୍ନ ହେଲା । ଏହା ଶୁଣି ମନ୍ତ୍ରୀପୁଅ ମୁରୁକି ହସି ହସି କହିଲା, ସାଙ୍ଗାତ ! ନିଛାଟିରେ ସେ ମାଲୁଣୀ ଟା ମତେ ଡାକି ନେଲା । ସେ ଯାହା କହିଲା, କଥାଟା ଅପାସନ କଥାଟାଏ, ସେ କଥାଟା ଶୁଣିଲେ ତୁମେ ନାପାସନରେ ମତେ ଉଡ଼ାଇ ଦେବ ।

ଏ କଥା ଶୁଣିଲାକ୍ଷଣି ରଜାପୁଅ ମନରେ ବେଶୀ ସନ୍ଦେହ ହେଲା। ବିଚାରିଲା, ସଙ୍ଗାତ ମାଲୁଣୀ ସଙ୍ଗେ କଅଣ ବିଶ୍ୱାସ କଥାବାର୍ତ୍ତା ହୋଇ ମତେ ଠକିବାକୁ ବସିଛି। ମନ୍ତ୍ରୀପୁଅ କହିଲା, ସଙ୍ଗାତ! କହିଲା ଲୋକକୁ ଲାଜ ନୁହେଁ, ଶୁଣିଲା ଲୋକକୁ ଲାଜ। ମାଲୁଣୀ ମତେ ପଚାରିଲା ଯେ, 'ପାନଟାଏ, ପାନଟା ଭିତରେ କଅଣଟାଏ?' ମୁଁ କହିଲି ଯେ, 'ପାନଟାଏ, ପାନଟା ଭିତରେ ଚୂନଟାଏ! ରଜାପୁଅ ମନରେ ତ ଆଗରୁ ସଙ୍ଗାତ ଉପରେ ସନ୍ଦେହ ହୋଇଥାଏ ରଜାପୁଅ ବିଚାରିଲା, ଏଇ ଚୂନ କଥାଟା ପାଇଁ ମାଲୁଣୀ ସଙ୍ଗାତକୁ ଡାକୁଥିଲା? ମୁଁ କଅଣ ଦୁଧପିଆ ଛୋଟ ପିଲା ଯେ, ସଙ୍ଗାତ ମୋତେ କପଟ କରି ମତେ ଅସଲ କଥା ଲୁଚାଇଲା! ଏହା ଭିତରେ ନିଶ୍ଚୟ ଆଉ କିଛି ଅଛି, ସଙ୍ଗାତ ମାଲୁଣୀ ଦୁହେଁ ଶିଖାଶିଖି ହୋଇ ମତେ ଏ କଥା ଲୁଚାଉଛନ୍ତି। ଏକେ ତ ରଜା ପୋଇ, ଯାହା ବୁଝିଲା ସେହି କଥାକୁ ଧରି ବସିଲା। ଆଉ ବୁଝିଲା ନାହିଁ। ମନ୍ତ୍ରୀପୁଅ ଯେତେ ଉଦ୍ୟମ କଲା, ଯେତେ ବୁଝାଇଲା; ରଜାପୁଅ ମନ ତ ଆଉ ବୁଝିଲା ନାହିଁ। ସଙ୍ଗାତ ପାଇଁ ମୁଁ ରାଇଜ ଛାଡ଼ିଲି, ବାପ ମା'ଙ୍କୁ ତେଜ୍ୟା କଲି, ସଙ୍ଗାତ ମୋଠାରେ ଚୂନ ମାଲୁଣୀ ଟା କଥାରେ ଏତିକି କପଟ କଲା! ଏହା ବିଚାରି ରଜାପୁଅ ସାଙ୍ଗେସାଙ୍ଗେ ମନ୍ତ୍ରୀପୁଅ ପାଖରୁ ଚାଲି ଆସିଲା, ଆଉ ତା ମୁହଁ ଚାହିଁଲା ନାହିଁ। ସେହିଦିନଠୁଁ ଦି' ସଙ୍ଗାତଯାକ ଛାଡ଼ଛାଡ଼ି ହେଲେ ଯେ, କାହା ଛାଇ କାହା ଦେହରେ ଆଉ ନ ପଡ଼ିଲା। ଏହା ଦେଖି ରଜା, ମନ୍ତ୍ରୀ, ସାହୁ, କୋଟୁଆଳ, , ଖାତକ, ପ୍ରଜା, ରଇତ, ଉଆସ, , ପୋଇଲୀ, ଚାକର ସମସ୍ତେ ଆନନ୍ଦ ହେଲେ। ମାଲୁଣୀଙ୍କୁ ରାଣୀ ମନଇଚ୍ଛା ଟଙ୍କା ପଇସା, ଧନ ରତ୍ନ, ଲୁଗା ପଟା, , ଗାଁ

ଟାଣ୍ଡ୍ର ଦେଲେ, ମାଲୁଣୀ ବଂଶଧାର ବଡ଼ଲୋକ ହୋଇଗଲେ, କେତେ ଲୁଗା, କେତେ ମିଠେଇ ବାଣ୍ଟିଲେ। ମତେ ପୁରୀ ଠାରୁ କଟକ ଯାଏ ଲମ୍ବ ଖଣ୍ଡେ ଲୁଗା ଦେଇଥିଲେ ତୋ, ସେ ଲୁଗା ଖଣ୍ଡିକ ମୋ ଆଣ୍ଠୁକୁ ଯାଇଲା ନାହିଁ। ମୁଁ ଗଲି ତୋ ମଣିମାଙ୍କୁ ଦେଖା କରିବାକୁ ମତେ ପାଟି ଫିଟାଇଲେ ନାହିଁ। ୪

ମୋ କଥାଟି ସରିଲା — ଫୁଲ ଗଛଟି ମଲା।

# ଟୁଣ୍ଟୁଣି ର ବୁଦ୍ଧି ବଳ

କୁଞ୍ଜବିହାରୀ ଦାଶ

ଟୁଣ୍ଟୁଣି ଚଢ଼େଇଟିଏ, ସେ ବାଇଗଣ ଗଛରେ ଡିମ୍ବ ଦିଏ। ସେ ଚରିବୁଲି ଗଲାବେଳେ ବିରାଡ଼ି ଆସି ସେ ଡିମ୍ବ ଖାଇଦିଏ। ଟୁଣ୍ଟୁଣି କାନ୍ଦିକାନ୍ଦି, ମନ ଦୁଃଖରେ ରହେ, ଶତ୍ରୁ ବଳୁଆ, ତା ସଙ୍ଗରେ କ'ଣ ପାରିବ ସେ, ଲଢ଼େଇ କରିବ ?

ଦିନେ ବିରାଡ଼ି ସଙ୍ଗେ ଟୁଣ୍ଟୁଣିର ଭେଟ ହେଲା। ଟୁଣ୍ଟୁଣିର ମନରେ ରାଗ କାହିଁରେ କେତେ ? ଏଇ ବିଲେଇଟା ଯୋଗୁଁ ମୋର ଗୋଟିଏ ପିଲା ରହିଲେ ନାହିଁ। ମନରେ ହିନା ଭାବିଲା, ଫନ୍ଦି ଜଗି କରି ରଖିଲା।

ବିରାଡ଼ି ଟୁଣ୍ଟୁଣିକି ଦିନେ ପଚାରିଲା — କିଅଣ କରୁଛୁ ଗୋ ଟୁଣ୍ଟୁଣି ?

ଟୁଣ୍ଟୁଣି କହିଲା — କଷ୍ଟମ୍ଭ ଦୁଃଖରେ ଅଛି ଗୋ ବିରାଡ଼ି ରାଣୀ। ବିରାଡ଼ିକି ଆଜି ଯାଏ ରାଣୀପଦ କେହି ଦେଇ ନ ଥିଲେ। ସେ ଶୁଣି ଭାରି ଖୁସିଟାଏ ହୋଇ କହିଲା — ଆଉ ତୋ ଡିମ୍ବ ଖାଇବି ନାହିଁ। ଟୁଣ୍ଟୁଣିର ଆନନ୍ଦ ଦେଖେ କିଏ ? ଯା ହେଉ, କଥା ପଦକରେ ଏଡ଼େ ବଡ଼ ଶତ୍ରୁ ବଶ ହେଲା।

ଏଥର ଟୁଣ୍ଟୁଣି ଡିମ୍ବ ଦେଲା। ପିଲା ଦିଓଟି ତହିଁରୁ ଉଭାଇଲା। ଗୁହୁଁ ଗୁହୁଁ ତାଙ୍କର ଡେଣାରେ ପର ଲାଗିଲା, ଦିନେ ଟୁଣ୍ଟୁଣି କହିଲା — ହୁରରେ ପିଲେ, ଉଡ଼ିପାରିବ ? ଚାଲ ଦେଖି ସେ ତାଳଗଛ ଉପରକୁ।

ପିଲାଦିଓଟି ଉଡ଼ିଗଲେ। ଟୁଣ୍ଟୁଣି ମନ ଖୁସିରେ.. ଗୀତ ଗାଇଲା—

ଟୁଣ୍ଟୁ - ଟୁଣି କେଡ଼େ ବୁଦ୍ଧି କଲା
ଓଲଟ ବରାଡ଼ିଙ୍କ ଠକିଦେଲା ।

ଏ ହାଡ଼ଜଳା କଥା ଶୁଣି ବରାଡ଼ି ଭାରି ରାଗିଗଲା । ହେଲେ ଆଉ ତାର କଅଣ କରିପାରିବ ? ତାର କଅଣ ଡେଣା ଅଛି ଯେ ଉଡ଼ିଯାଇ ଆକାଶରୁ ଉଡ଼ି ଆଣିବ ?

ଟୁଣ୍ଟୁ ଟୁଣିର ଏବେ ଗର୍ବ କହିବାର ନ ଥିଲା । ତାର ପଂଳ ଧଙ୍ଗେ ଧଙ୍ଗେ ସେ ଯାଇଗଲା । ବରାଡ଼ି ନାଆଁରେ ଗୀତ ଗାଇ ନାଚି ନାଚି ବାଇଗଣ କଣ୍ଟାଟିଏ ପା ଗୋଡ଼ରେ ଗଳିଗଲା । ସେ ଯାଇ ରାଜାଙ୍କ ଘର ଭଣ୍ଡାରୀଙ୍କି କହିଲା – ହେ ଭଣ୍ଡାରୀ ଭାଇ, କଣ୍ଟା ଟିକିଏ କାଢ଼ିଦିଅ । ଭଣ୍ଡାରୀ କହିଲା – ମୁଁ ରାଜାଙ୍କ ମୁଣ୍ଡଖିରା ଲୋକ ; ତୁଆର ଚଢ଼େଇଟା ଗୋଡ଼ ଧରି କଣ୍ଟା କାଢ଼ିବି ? ଯାଃ ଯାଃ – ଲୋକେ ମତେ ହସିବେ ଉପହେଇବେ ।

ସେ କଥା ଶୁଣି ଟୁଣ୍ଟୁ ଟୁଣି ଯାଇଁ ରାଜାଙ୍କ ଛାମୁରେ ଗୁହାରି କଲା । ରାଜା ସେ କଥା କାନକୁ ନେଲେ ନାହିଁ, ସେଠୁ ଯାଇ ରାଣୀମାଙ୍କ ଗୋଡ଼ ତଳେ ପଡ଼ିଲା । ତମ ରାଇଜର ଟିକି ଚଢ଼େଇଟିଏ ମୁଁ, ତମ ପ୍ରଜା ; ରଜା ମୋ ଗୁହାରି ଶୁଣୁନାହାନ୍ତି, ତୁମେ ହେଲେ ଟିକିଏ କହ । ସେ ଭଣ୍ଡାରୀକୁ ଡାକି ମୋ ଗୋଡ଼ରୁ କଣ୍ଟାଟା କଢ଼େଇ ଦିଅ ।

ରାଣୀ ସେ କଥା କାନକୁ ନେଲେ ନାହିଁ, କହିଲେ ମୁଁ ଏବେ ସଜ ହେଉଚି ଯେ କଥା କିଏ ମୋ ଆଉ ଶୁଣୁଚ ; ଯାଃ – ଯାଃ ।

ଟୁଣ୍ଟୁ ଟୁଣି ତହୁଁ ରାଗିଯାଇ କହିଲା – ପ୍ରଜାଙ୍କ ଗୁହାରି

ଲୋ ଶୁଣୋ ନାଇଁ ସେ କି ରଜା ? ସେ କି ରାଣୀ ? ସେ କି ରାଣୀ ? ଏ ଥିଲେ କେତେ, ମଲେ କେତେ ?

ଟୁଣ୍ଡୁ - ଟୁଣି ଯାଉ ଯାଉ ଗୋଟିଏ ବଡ଼ ନାଗକୁ ଭେଟିଲା । ତା ଗୋଡ଼ତଳେ ପଡ଼ି କହିଲା — ସାପରଜା, ଏ ଦେଶ ରଜାରାଣୀ ବଡ଼ ଆପଣା ସୁଖୀ, ପ୍ରଜାର ଦୁଃଖଗୁହାରି ବୁଝନ୍ତି ନାଇଁ, ତୁ ତାଙ୍କୁ କାମୁଡ଼ ପକା । ସେମାନେ ମରିଯାଆନ୍ତୁ ।

ନାଗ କହିଲା — ମୁଁ କିଛି ଦୁଃଖରେ ନାଇଁ, ବେଙ୍ଗଟାଏ ମୂଷାଟାଏ ଖାଇ ସୁଖରେ ଅଛି । ରଜା ମୋ ଗୁହାରି ନ ବୁଝିଲେ ମୋର ଦୁଃଖ ନାଇଁ, ସେ ଗୁହାରି ନ ଶୁଣିଲେ ମୋଅର କଅଣ ଅଛି ? ତାରଲାଗି ମୁଁ କାହିଁକି ଜନା ଦୋଷରେ ରଜା ରାଣୀଙ୍କି କାମୁଡ଼ିବି ?

ସେଠୁ ଟୁଣ୍ଡୁ - ଟୁଣି ଯୋଡ଼ାଏ ଠେଙ୍ଗା ପାଖକୁ ଗଲା । କହିଲା — ହେ ଠେଙ୍ଗା, ତୁ ସେ ନାଗକୁ ପିଟି ପିଟି ମାରି ପକା । ଠେଙ୍ଗା କହିଲା — ତୁ କିଏ ଲୋ ? ସାପ ତା ବାଟରେ ଯାଉଛି, ମୁ କାହିଁକି ଯାଇ ତାକୁ ମାରିବି ? ସେଠୁଁ ଟୁଣ୍ଡୁ ଟୁଣି ଯାଇ ନିଆଁ ପାଖରେ ପହଞ୍ଚିଲା — କହିଲା, ହେ ନିଆଁ, ତୁମେ ସେ ଠେଙ୍ଗାକୁ ପୋଡ଼ି ପାଉଁଶ କରିଦିଅ ।

ନିଆଁ କହିଲା — ତୋଅର କଥାରେ ? ଠେଙ୍ଗା ମୋର କି ଦୋଷ କରିଛି ଯେ ମୁଁ ତାକୁ ପୋଡ଼ି ଦେବି ? ସେ ଥାଉ, ଚୋରକୁ ମାରିବ, ଗୁଣ୍ଡାକୁ ମାରିବ ।

ସେଠୁ ଟୁଣ୍ଡୁ ଟୁଣି ଯାଇ ସମୁଦ୍ରକୁ କହିଲା – ହେ ସମୁଦ୍ର ଦେବତା, ତମେ – ପୃଥିବୀରେ ଯେତେ ଜଆଁ ଅଛି ଲହରାଇ ଦିଅ । ସମୁଦ୍ର କହିଲା – ଜଆଁ ଲହରି ଗଲେ ପୃଥିବୀ ଚଳିବ କେମିତି ? ଛୋଟ ଲୋକର ଛୋଟ ବୁଦ୍ଧି – ପଳା – ପଳା ମୋ ଆଗରୁ କହୁଛି, ନହେଲେ ତୋର ଭଲ ହେବ ନାହିଁ । ସେଥିରୁ ଟୁଣ୍ଡୁ ଟୁଣି ଗୋଟାଏ ହାତୀ ପାଖକୁ ଗଲା, ଭାଇ, ତୁ ନ ରଖିଲେ ମୁଁ ଭାସିଗଲି । ତୁ ଯାଆ କି ସମୁଦ୍ର ପାଣି ଶୋଷି ଦେ । ହାତୀ କହିଲା – ତୁ ଆଛା କଥା କହୁଚୁ, ଲୁଣି ପାଣି ଶୋଷକ ପିଇ ମୁଁ କଅଣ ମରିବି ? ସେଠୁ ଯାଉ ଯାଉ ଟୁଣ୍ଡୁ ଟୁଣି ଗୋଟିଏ ମହୁଘରା ଦେଖିଲା – କହିଲା ହେ ଭାଇ, ତମେ ହାତୀକି କାମୁଡ଼ । ମହୁମାଛି ହୁସ୍ତ ଜୀବ । ଟୁଣ୍ଡୁ ଟୁଣି ତାଙ୍କୁ ନମସ୍କାର ହେଉଥିବାର ଦେଖି ମନେ ମନେ ଫୁଲିଗଲେ । କିଛି ବିଚାର ନ କରି ହାତୀ ପାଖକୁ ଉଡ଼ିଗଲେ । ହାତୀ ଟୁଣ୍ଡୁଟୁଣିକି ଡାକ ପକେଇଲା – ମତେ ଏ ମହୁମାଛି ହାତରୁ ରକ୍ଷା କର, ମୁଁ ସମୁଦ୍ରକ ପାଣି ଏଇକ୍ଷଣି ଶୋଷି ଦଉଚି । ହାତୀ ପାଣି ଶୋଷିବାକୁ ଆସିବା ଦେଖି ସମୁଦ୍ର କହିଲା – ଟୁଣ୍ଡୁଟୁଣି, ମୁଁ ଏଇକ୍ଷଣି ଜଆଁ ଲହରାଇ ଦେବି । ତୁ ହାତୀକି ମନା କର । ମୋ ପାଣି ସେ ନ ପିଉ ।

ଟୁଣ୍ଡୁଟୁଣି ହାତୀକି ମନା କଲା । ସେ ଜଆଁ ଲହରେଇବାକୁ ବାହାରିଲା । ଜଆଁ ଡରିଯାଇ କହିଲା– ଟୁଣ୍ଡୁଟୁଣି, ତୁ ସମୁଦ୍ରକୁ ମନା କର, ମୁଁ ତୋ କାମ କରିବି । ଟୁଣ୍ଡୁଟୁଣି ସମୁଦ୍ରକୁ ମନାକଲା – ଜଆଁ ଠେଙ୍ଗା ପାଖକୁ ବାହାରିଲା, ଠେଙ୍ଗା ସେଠୁ ନାଗ

ସାପକୁ ମାରି ଗୋଡ଼େଇଲା । ସାପ ରାଜା ରାଣୀଙ୍କି କାମୁଡ଼ି ଗୋଡ଼େଇଲା । ରଜାରାଣୀ ଚଟେଇ ଗୋଡ଼ରୁ କଣ୍ଟା କାଢ଼ ଦେବାକୁ ଆଜ୍ଞା ଦେଲେ । ଭଣ୍ଡାରୀ ରଜାଙ୍କ ଆଜ୍ଞା ପାଇ ଚଟେଇ ଗୋଡ଼ରୁ କଣ୍ଟା କାଢ଼ ଦେଲା । ସେଠୁ ଟୁଣ୍ଟୁଣି ଗୀତ ଗାଇଲା —

ଟୁଣ୍ଟୁ ଟୁଣି କି ବୁଦ୍ଧି କଲା —
ରାଜା ରାଣୀଙ୍କି ପାଦେ ଝଟାଇଲା ।

ମୋ କଥାଟି ସରିଲା ।

# ମନ୍ତ୍ରୀ ପୁଅ ସାଧବଝିଅ କଥା ।

ଗୋପାଳ ଚନ୍ଦ୍ର ପ୍ରହରାଜ

ଏକ ରାଇଜରେ ମନ୍ତ୍ରୀଟିଏ, ସାଧବଟିଏ ଥାଆନ୍ତି । ମନ୍ତ୍ରୀର ଗୋଟିଏ ପୁଅ, ସାଧବର ଗୋଟିଏ ଝିଅ, ମନ୍ତ୍ରୀପୁଅ ସାଧବ ଝିଅ ଛଟି ଯାଇ ସ୍କୁଲ୍‌ରେ ପାଠ ପଢନ୍ତି । ଦିନକର କଅଣ ହୋଇଛି କି ନା' ମନ୍ତ୍ରୀ ପୁଅର ଖଡ଼ୀ ସରିଗଲା । ସେ ସାଧବ ଝିଅକୁ କହିଲା ହେ ମୋ ଖଡ଼ୀ ଖଣ୍ଡିକ ଗୋଟେଇ ଆଣି ଦେବୁଟି ? ସେ ଝିଅଟି କହିଲା, ମୁଁ କାହିଁକି ତୋ ଖଡ଼ୀ ଗୋଟେଇ ଆଣି ଦେବି ନା'? ତୁ ଆଣୁନାହୁଁ ? ମନ୍ତ୍ରୀ ପୁଅ ସାଧବ ଝିଅକୁ କହିଲା, ଇମିତ ଝିଅକୁ ବିଭା ହୁଅନ୍ତୁ ବାପ ଘରେ ରନ୍ଧା ବଢା କରନ୍ତା । ସାଧବ ଝିଅ ମନ୍ତ୍ରୀପୁଅକୁ କହିଲା, "ଇମିତ ପୁଅକୁ ବିଭା ହୁଅନ୍ତୁ, ଝୁରେଇ ଝୁରେଇ ମାରୁ ଥାଆନ୍ତୁ ।" ଇମିତ ଦୁହେଁଯାକ କଳି କଜିଆ କରି ଯୋର୍‌ଯା ଘରକୁ ଗଲେ । ମନ୍ତ୍ରୀପୁଅ ତା ଘରକୁ ଯାଇ ଗୋଟିଏ ଅନ୍ଧାର ଘରେ, ନ ଖାଇ ନ ପିଇ କବାଟ କିଳି ଶୋଇଲା । ସେ ଯେତେ ଡାକିଲେ ଶୁଣିଲା ନାହିଁ । ମା ବି ଆସି ଡାକିଲା, କବାଟ ଫିଟାଇଲା ନାହିଁ । ପଛୁବେଳକୁ ମା ବହୁତ କାଆଁନେଇ ସାଆଁନେଇ କହିଲା, ତତେ କି କଥା ଅପୁରୁବ ଯେ କବାଟ କିଳି ଶୋଇଛୁ, ତୁ କବାଟ ଫିଟା, ହୁଜି ଯାଉଥିଲେ ଯୋଗେଇ ଦେବି ଭାଙ୍ଗି ଯାଉଥିଲେ ଗଢେଇ ଦେବି, ସ୍ୱର୍ଗରୁ ଚନ୍ଦ୍ର ଅଣେଇ ଦେବି, ତୁ କବାଟ ଫିଟା । ପଛୁକୁ ମନ୍ତ୍ରୀପୁଅ କହିଲା, ଯେବେ ମତେ ସେ ସାଧବ ଝିଅକୁ ବିଭା କରିବ ଦେବେ ଯାଇଁ ମୁଁ କବାଟ ଫିଟାଇବି, ନଇଲେ ଏ ଜୀବନ ହାରିଦେବି । ମା ଏ କଥା ଯାଇ ବାପକୁ କହିଲାରୁ ମନ୍ତ୍ରୀ କହିଲେ ହଉ

ତେବେ ଉଠୁ । ସେ ପୁଅଟି କବାଟ ଫିଟାଇ ଗାଧୁଆ ଗାଧୁଆ ଖିଆପିଆ କଲା । କେତେଦିନ ଗଲାରୁ ମନ୍ତ୍ରୀ ସାଧବକୁ ଡକାଇ ବଡ଼ ବିନତିରେ ଠିକଣା କରି ପୁଅଟିକୁ ସାଧବ ଝିଅ ସଙ୍ଗେ ବାହା କଲେ । ହାତଗଣ୍ଠି ପଡ଼ିବାରୁ ମନ୍ତ୍ରୀପୁଅ ଏକଜିଦ୍ କଲା, ସେ କନ୍ୟା ଆମ ଘରକୁ ଆସିବ ନାହିଁ । ମନ୍ତ୍ରୀର ତ ଗୋଟିଏ ପୁଅ । ତା କଥା କି ନ ରଖିବେ ? ମନ୍ତ୍ରୀ ସାଧବ ଝିଅକୁ ଆଉ ତାଙ୍କ ଘରକୁ ଜମା ଆଣିଲେ ନାହିଁ । ସାଧବ ଝିଅଟି ବଡ଼ ହେଲା ଜ୍ଞାନ ପାଇଲା, ତେବେ ବୁଝି ମନ୍ତ୍ରୀ ଘରୁ ଡାକରା ନ ଗଲା । ସାଧବ ଝିଅ ଝୁରୁଲ କଥା ମନେ ମନେ ଭାବି ଦୁନା ହୋଇ ଘରେ ଥାଏ । ଇମିତିକା କେତେ ଦିନ ଗଲା । ଦିନକର ସାଧବ ଝିଅ ଏକ ବୁଦ୍ଧି କଲା । ସେ ସାଧବକୁ ଯାଇ କହିଲା, ବାପା ମତେ ଗୋଟିଏ ଇମିତିକା ସିନ୍ଦୁକ କରାଇ ଦେବ ଯେ ସେଥିରେ ମଣିଷଟିଏ ବସିଲେ ଚଳିପାରିବ । ସେଥିରେ ସବୁ ଜିନିଷ ଥିବ । ପାଣି, , ଚୁଲି ସବୁ ଥିବ । ଯିମିତିକା ସେ ସିନ୍ଦୁକ ଭିତରେ ମୁଁ ପଶିବି, ସେ ସିନ୍ଦୁକରେ ଇମିତିକା ଫିଟିବ କଳ ଥିବ ଯେ, ବାହାର ଲୋକ ତାକୁ ଫିଟାଇ ପାରିବ ନାହିଁ । ଭିତରେ ଯେ ରହିବ ସେ କଳରେ ହାତ ମାରି ଦେଲେ ସିନ୍ଦୁକଟି ଫିଟିଯିବ, ପେଂରେ ବନ୍ଦ କଲେ ପଡ଼ିଯିବ । ମନ୍ତ୍ରୀଙ୍କ ଘରକୁ ସେ ସିନ୍ଦୁକଟିକି ଲୋକଙ୍କ ହାତରେ ପଠାଇଦେବ । ସେ ସିନ୍ଦୁକଟି କିମିତି ଫିଟିବ ସେ କଥା କାହାରକୁ କହିବ ନାହିଁ କି ସେ ସିନ୍ଦୁକକୁ ଆଉ କାହାରକୁ ଦେବ ନାହିଁ । ମନ୍ତ୍ରୀପୁଅ ଯେବେ କହିବେ ସେ ସିନ୍ଦୁକଟି ଆମକୁ ଦିଅ ବୋଲି ତେବେ ଦେବ । ସେ ସିନ୍ଦୁକଟିକୁ ତୁମେ ଆମ ଲୋକଙ୍କ ହାତରେ ଘାଣ୍ଟରେ ବିକିବାକୁ

ଖୋଲିହେବ । ତୁମର ଏ ସିନ୍ଦୁକ ଖୋଲି କେହି ଜାଣିବେ ନାହିଁ । ସାଧବ ତା ଝିଅକୁ ତ ଭାରି ଗୋପ୍ୟରେ ରଖାଇ ଥାଏ । ତା କଥା କି ତଳେ ପଡ଼େ ? ଏଣେ ଝିଅ ଜିଅ କେତେ ଦିନ କାଏ ରହି ପାରିବ ଘରେ ? ସାଧବଙ୍କୁ କେଉଁ ବଢ଼େଇ ଅପୂର୍ବ ଅବା ? ରାଇଜ ଯାକରୁ ଭଲ ଭଲ ବଢ଼େଇ କାରିଗର ଖୋଜେଇ ଝିଅ ଯେମିତି କହିଥିଲା ଉତ୍ତମ ସୁନ୍ଦର ଭିତରେ କଳଲଗା ସିନ୍ଦୁକଟିଏ ତିଆରି କରେଇଲା । ସେ ସିନ୍ଦୁକରେ ଏମିତି କଳ ଥାଏ ଯେ, ତା ଭିତରେ ମଣିଷଟିଏ ପଶି କଳ ଘୋଡ଼ିଆଟିକି ଟିପି ଦେଲେ ସେ ସିନ୍ଦୁକ ସହଜ ହୋଇ ବନ୍ଦ ହୋଇଯାଏ, ବାହାର ଲୋକେ ଯେତେ ଚେଷ୍ଟା କଲେ ଆଉ କେବେହେଁ ନ ଫିଟେ । ତା ଭିତରେ ଯେ ମଣିଷ ପଶିଥାଏ ସେ ମନ କଲେ ଭିତର ଆଡୁ ସେ କଳଘୋଡ଼ିଆଟିକି ଟିପି ଦେଲାରୁ ତେବେ ଯାଇକରି ସେ ସିନ୍ଦୁକ ଖୋଲା ହୋଇଯାଏ । ସେ ସିନ୍ଦୁକଟି ତିଆରି ସରିଲାରୁ ସାଧବ ତା ଝିଅକୁ ଦେଖେଇଲା । ଝିଅ ତା ଭିତରେ ପଶି କରି ପରୀକ୍ଷା କଲା, ଦେଖିଲା ଯେ ତା ମନକୁ ଲାଖି ସେ ସିନ୍ଦୁକଟି ଠିକଣା ହୋଇଛି । ସାଧବ ସିନ୍ଦୁକ ଭିତରେ ଜଣେ ମଣିଷର ଲୋଡ଼ା ବରଷକ ପାଇଁ ସବୁ ଚିଜ ଖଞ୍ଜାଖଞ୍ଜି କରି ରଖାଇଲା, ପଛକୁ ତା ଝିଅଟି ତା ଭିତରେ ପଶିଲା । ପଶି କରି ଭିତର ଆଡୁ କଳକୁ ଟିପିକରି ତାଙ୍କୁଣିଟିକୁ ପକାଇ ଦେଲା । ସାଧବର ମଣିଷ ସେ ସିନ୍ଦୁକକୁ ନେଇ ସାଇ ସାଇ ବୁଲାଇ ଶେଷକୁ ଯାଇଁ ମନ୍ତ୍ରୀ ସାଇରେ ପହଁଚିଲେ । ସେ ଲୋକେ ସିନ୍ଦୁକ ମୁଣ୍ଡାଇ ଥାନ୍ତି, ଏଣେ କହୁଥାନ୍ତି ଏ ସିନ୍ଦୁକ ଯେ ଫିଟାଇ ପାରିବ ସେ ନେବ, ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ, ଯେ ଦେଖିଲା ସେ କହିଲା — କି ସୁନ୍ଦର ସିନ୍ଦୁକଟିଏ ହୋଇଅଛି ! ଆମେ

ଦେଖନ୍ତେ ଦେଖିଲା ବେଳକୁ ପଦାରେ ଟାଙ୍ଗି ତାଲା କଟି ନାହିଁ, ଏପରେ ଫିଟେଇଲା ବେଳକୁ ଫିଟୁ ନାହିଁ। ଏ କହିଲା କି ସୁନ୍ଦର ସିନ୍ଦୁକଟିଏ ହୋଇଛି, ଆମକୁ ଦିଅ, ସେ କହିଲା ଏ ସିନ୍ଦୁକଟି ଆମକୁ ଦିଅ। ସାଧବ ଘର ଲୋକ କହିଲେ, ଯେ ଏ ସିନ୍ଦୁକ ଫିଟେଇବ ତାକୁ ଦେବୁଁ, ତେଣୁ ଯେତେ କହିଲେ କେହେଁ ଦେଲେ ନାହିଁ। ମନ୍ତ୍ରୀପୁଅ ଆସି ସେ ସିନ୍ଦୁକକୁ ଦେଖି ଭୋଳ ହୋଇଗଲା, କହିଲା, ଏ ସିନ୍ଦୁକଟି ମୁଁ ଫିଟେଇବି, ମତେ ଦିଅ। ଏ ଲୋକେ ସିନ୍ଦୁକଟିକୁ ଦେଇ ଆସିଲେ। ମନ୍ତ୍ରୀପୁଅ ତା ଚାକରକୁ ଡକାଇ କହିଲା, ଆରେ ଏ ସିନ୍ଦୁକଟିକୁ ନେଇ ଯା, ମୋ ଶୋଇଲା ଘରେ ଥୋଇଦବୁ। ଚାକରମାନେ ସେ ସିନ୍ଦୁକଟିକୁ ନେଇ ମନ୍ତ୍ରୀ ପୁଅର ଶୋଇଲା ଘରେ ପଲଙ୍କ ତଳେ ଥୋଇ ଦେଲେ। ସେଦିନ ମନ୍ତ୍ରୀପୁଅ ଖାଇ ପିଇ ସାରି ଯେତେ ଚେଷ୍ଟା କଲା ସେ ତାକୁ ଫିଟିଲା ନାହିଁ। ସେ ଦିନ ରାତି ହେଲା, ମନ୍ତ୍ରୀପୁଅ ପଲଙ୍କ ଉପରେ ଶୋଇଲା, ସାଧବ ଝିଅ ତ ମହାସିଦ୍ଧାଣିଆ, ସେ ସିନ୍ଦୁକ ଭିତରେ ଥାଇ ପଦା କଥା ସବୁ ଜାଣୁଥାଏ। ଯେ ଲୁଆଙ୍କେ ସମସ୍ତେ ନିଦରେ ଶୋଇଲେ। ସିନ୍ଦୁକଟି ମନ୍ତ୍ରୀପୁଅର ଶୋଇଲା ଘରେ ତ ଥୁଆ ହୋଇଥାଏ। ମନ୍ତ୍ରୀ ପୁଅ । ଶୋଇପଡ଼ି ଘୁଙ୍ଗୁଡ଼ି ମାଇଲା। ସାଧବ ଝିଅ ଦେଖିଲା, ମନ୍ତ୍ରୀ ପୁଅର ଆଉ ଚେତା ନାହିଁ, ସାଧବ ଝିଅ ଅପରାଡିରୁ ସେ ସିନ୍ଦୁକ ଭିତରୁ କଳ ଫିଟେଇ ଘର ଦୁଆରଙ୍କ ଓଳିଆ ଗୋଳିଆ କରି ଦେଇ ମନ୍ତ୍ରୀ ପୁଅର ଗିଲାସ, ଗିନା, ସବୁ ମାଜାମାଜି କରି ମୁଣ୍ଡ କୁଣ୍ଡାଉଚି, ଏହିକି ବେଳେ, ସକାଳ ହୋଇଗଲା। ରାତି ପାହି ଗଲାରୁ କାଳେ ମନ୍ତ୍ରୀପୁଅ

ଉଠିବ ବୋଲି ସେ ତରବର ହୋଇ ସିନ୍ଦୁକ ଭିତରକୁ ପଶିଯାଇ ସିନ୍ଦୁକ ଭିତର ଆଡ଼ୁ ଘୋଡ଼ିଆକୁ ଟିପି ଦେଲା । ମନ୍ତ୍ରୀପୁଅ ଉଠି ଦେଖେ ତ ସେ ସିନ୍ଦୁକ ପାଖରେ ପାନିଆ ପଡ଼ିଛି ଦର୍ପଣ ପଡ଼ିଛି, ମୁଣ୍ଡର ବାଳ ପଡ଼ିଛି । ମନ୍ତ୍ରୀପୁଅ କହୁଥିଲା, ଆହା! ଏ ବାଳ ତ ଏତେ ଲମ୍ବ! ଏ ଯାହାର ସେ କେତେ ସୁନ୍ଦର ହୋଇ ନ ଥିବ । ତହିଁ ଆରଦିନ ମନ୍ତ୍ରୀପୁଅ କା'ଣ କଲା ନା ଗୁଡ଼ାଏ ପଢ଼ିଲା ଘୋର ମନ୍ତ୍ରି ବୃଷ୍ଟି ରସ୍ନକୁ ତଳେ ଛଡ଼ି ଦେଲା, ଯେ ଘରକୁ ଆସିବ କି ଯାଉ ଥିବ ତା ପାଦ ଏଥିରେ ଲାଗିବ । ସେ ମଣିଷ କୁଆଡ଼ୁ ଆସି କୁଆଡ଼େ ଯାଉଛି ବଡ଼େ ଧରା ପଡ଼ିବ । ସେଦିନ ସାଧବ ଝିଅ ସିନ୍ଦୁକ ଫିଟାଇ ସିମିତ ଅଧରାତିରୁ ଉଠି ପଦାକୁ ଆସିଲାକ୍ଷଣି ଘୋର ରସ ତା ପାଦରେ ଲାଗିଗଲା । ସାଧବ ଝିଅ ତ ଏ କଥା ନ ଜାଣେ, ସେ ତେଣୁ ଆସି ଘର ଓଳିଆ ଟୋକିଆ କରି ବାସନ ମାଜି ମୁଣ୍ଡ କୁଣ୍ଡେଇଲା ବେଳକୁ କୁଆ କୋଇଲି ବୋବେଇଲେ । ସାଧବ ଝିଅ ସିନ୍ଦୁକ ଭିତରକୁ ପଶିଗଲା ବେଳକୁ ତରବରରେ ତା କାନରୁ ଗୋଟେ କାପ ପଡ଼ିଗଲା । ତହିଁ ଆରଦିନ ମନ୍ତ୍ରୀପୁଅ ଉଠି ଦେଖେତ ଜଣେ ସ୍ତ୍ରୀର ପାଦଚିହ୍ନ ସେ ସିନ୍ଦୁକ ଯାଏଁ ପଡ଼ିଛି, ସିନ୍ଦୁକ ପାଖରୁ ଫେରନ୍ତି ପାଦଚିହ୍ନ ଆଉ ପଡ଼ି ନାହିଁ, ଫେର ଦେଖିଲା ଯେ ସିନ୍ଦୁକ ପାଖରେ ଗୋଟେ କାପ ପଡ଼ିଛି । ମନ୍ତ୍ରୀପୁଅ କହିଲା, ଆହା! ଏ ପାଦ ଚିହ୍ନତ ଏତେ ସୁନ୍ଦର! ଏ ସ୍ତ୍ରୀ କେତେ ସୁନ୍ଦର ହୋଇ ନ ଥିବ! ଯେତେ ଚେଷ୍ଟା କଲା ସେ ସିନ୍ଦୁକ ଫିଟାଇ ନ ପାରିଲା । ନିଶ୍ଚେ ଜାଣିଲା ଯେ ଏ ସିନ୍ଦୁକ ଭିତରେ କିଏ ଅଛି । ଇମିତି ସବୁଦିନ ସେ ସ୍ତ୍ରୀକୁ ଦେଖିବ ବୋଲି ଝୁରି ଝୁରି କଷ୍ଟ ହୋଇଗଲା, ମନ୍ତ୍ରୀପୁଅକୁ ନିଦ

ଜର କଲା । ପଦ୍ମକୁ ତା' କଣ୍ଠୁ ଖୋଲିଲା

ଭାଇ ରୋଗରେ ପଡ଼ିଛି ବୋଲି ଦିନକର ମନ୍ତ୍ରୀ ଝିଅ ତା ଭାଇକୁ ଦେଖିବାକୁ ଶାଶୁଘରୁ ବାପ ଘରକୁ ଆସୁଛି, ବାଟରେ ଏକ ଗାଁରେ ସନ୍ଧ୍ୟା ବୁଡ଼ିଲାରୁ ଗୋଟିଏ ରାଣ୍ଡୀର ଘରେ ସେ ରାତିକି ରହିଗଲା । ନିର୍ଜନ ରାତି ହୋଇ ଗଲାରୁ ସେ ଘରେ ପିତା, ବୁଢ଼ୀ, ଟୁଆଁଣି, କଂସା, ଥାଳି କଥାବାର୍ତ୍ତା ହୋଇ କୁହାକୋହି ହେଉଥାନ୍ତି, — ବୁଢ଼ୀ କହିଲା, ଆହା ! ସେ ସାଧବ ଝିଅକୁ ଝୁରି ଝୁରି ମନ୍ତ୍ରୀପୁଅର ତ କଣ୍ଠା ଆସି ରହିଲାଣି । କେଡ଼େ ସୁନ୍ଦର ଭେଣ୍ଡା ପୁଅ !

ଆଉ ତ ବଞ୍ଚିଲା ପରି ଲାଗୁନାହିଁ । ପିତା କହିଲା — ହଇଲୋ ! ସେ ମନ୍ତ୍ରୀପୁଅ ସାଧବ ଝିଅକୁ କାହିଁକି ଏତେ ଝୁରୁଛି ମ ? ଯାହା ଯାହା ସେ ଗଣ୍ଠଶାଳୀରେ ମନ୍ତ୍ରୀପୁଅ ସାଧବ ଝିଅ କଳି କଜିଆ ଲଗାଇଥିଲେ ସବୁ କଥାଯାକ ମୂଳରୁ ଅଗଯାକେ ଥାଳିପାଟକ କହିଲା । କଂସା କହିଲା — ଏଥିକି କଅଣ କିଛି ଉପାୟ ନାହିଁ ? ଟୁଆଁଣୀ କହିଲା — ହଁ, ମନ୍ତ୍ରୀପୁଅ ସେ ସିନ୍ଦୁକ ପାଖରେ ~~ଯାନ୍ତରେ~~ ଯାଇ କ୍ଷମା ମାଗିଲେ ସାଧବ ଝିଅ ସେ ସିନ୍ଦୁକ ଭିତରୁ ବାହାରି ପଡ଼ନ୍ତା ମ । ଭାଇ ବିହୁତ୍ସ୍ୟ ଯୋଗୁଁ ଚିନ୍ତାରେ ତ ଭଉଣୀଙ୍କ ସେ ରାଣ୍ଡୀଘରେ ନିଦ ହୋଇ ନ ଥାଏ । ସେ ଖାଲି ଚେଇଁକରି ~~ଯାଇ ପାରି~~ ପଡ଼ିଥାଏ । ମନ୍ତ୍ରୀପୁଅର ଭଉଣୀ ଏ ସବୁ କଥାବାର୍ତ୍ତା ଶୁଣିକରି ସକାଳୁ ଉଠି ମନ୍ତ୍ରୀଙ୍କ ଦୁଆରରେ ପହଞ୍ଚିଲା । ଯାଇଁ ଭାଇ ଆଗେ କହିଲା — ତୁମେ ସିନ୍ଦୁକ ପାଖରେ ଲମ୍ବ ହୋଇ ~~ଯାନ୍ତରେ ଗୁଡ଼ା~~ ଦେଇ ପଡ଼ିଯାଅ । ଏ କଥା ଶୁଣି ଭାଇ ଯାଇ ସେ ସିନ୍ଦୁକ

ତଳେ ଲମ୍ବ ହୋଇ ପଡ଼ିଗଲାରୁ ସେ ସିନ୍ଦୁକଟିର ତାଲାକୁ ଭିତରୁ
ସାଧବ ଝିଅ ଟିପି ଦେଲାରୁ ସିନ୍ଦୁକ ମେଲା ହୋଇଗଲା । ତା
ଭିତରୁ ~~ସୁନା~~ ~~ଜହ୍ନସୀ~~ ପାଟ ଶାଢ଼ୀ ପିନ୍ଧି ~~ପଦ୍ମଗନ୍ଧ~~ ~~ହୋଇ~~ ~~ଦିଶା~~
ସୁନ୍ଦର କନ୍ୟାଟିଏ ରୁଣୁଝୁଣୁ ହୋଇ ବାହାରି ପଡ଼ିଲା । ଦିହେଁଯାକ
ଚିହ୍ନା ଚିହ୍ନି ହେଲେ । ସାଧବଝିଅ କହିଲା – କିହେ ! ମୋ
କଥା ସତ ହେଲା କି ତୁମ କଥା ସତ ହେଲା ? ଦିହିଁଙ୍କି
ଦିହେଁ ରହିଯାକ କେତେ ଦୁଃଖ ସୁଖ ହେଲେ ।
ରାତି ପାହିଲାରୁ ମନ୍ତ୍ରୀପୁଅ ସେ ଘରୁ କବାଟ ଫିଟାଇ
ବାହାରକୁ ଆଇଲା । ସମସ୍ତେ ଦେଖିଲା ବେଳକୁ ଏ କନ୍ୟାଟି
କବାଟରେ ଓଟଣା ପକାଇ ଠିଆ ହୋଇଛି ! ଏହା ଦେଖି ସମସ୍ତେ
ଆନନ୍ଦ ହେଲେ ହୁଳହୁଳି ପକେଇଲେ । ମନ୍ତ୍ରୀ ଭାରିଯା ହାତ ଧରି
କରି ସାହିରୁ ସାତ ଜଣା ମାଇପିଙ୍କୁ ଡାକି ଆଣି ବୋହୂକୁ ଘର
ଭିତରକୁ ନେଲେ । କେତେ ଆଦର କଲେ । ରାଇଜଯାକ ହୁରି
ପଡ଼ିଗଲା । ସମସ୍ତେ ଆନନ୍ଦ ହେଲେ । ମନ୍ତ୍ରୀପୁଅ ସାଧବଝିଅ
ଘର ଦୁଆର କଲେ । ଦିହେଁ ପୁଅ, ନାତି, ଅଣନାତି, ଝିଅ,
ଜୋଇଁ କଲେ । ବୁଢ଼ା ବୁଢ଼ୀ ହେଲେ, କାଳ ପାଇଲେ । ନାକ
ତଳେ ଘୁସୁରିଲା । ମୁଁ ଗଲାରୁ କଥା ନ କହିଲେ ।

# ଅଗରେ ହାଣ୍ଡି ମୂଳରେ ଚୁଲୀ ରଜା ହେ, ତୁମ ବିଚାର ଭଲି

କୃଷ୍ଣବିହାରୀ ଦାଶ

ସେ ବର୍ଷ ଭାରି ଶୀତ, ହାତ କେମା କେମା ହୋଇ
ଯାଉଥାଏ ; ଦାନ୍ତ ଠକ୍ ଠକ୍ ବାଜୁଥାଏ । ଏ
ଶୀତରେ ରଜା ଦିନେ କହିଲେ - ତମ ଭିତରୁ କିଏ ପାରିବ ? ଏ
ଘୋର ଦଳ ପୋଖରୀ , ଏଥିରେ ରାତିସାରା ବୁଡ଼ି
କିଏ ସକାଳ ଯାଏ ରହିପାରିବ ? ହଜାର ସୁନା ଟଙ୍କା ଦେବି
ପାଖ ଲୋକେ ଏ ତା ମୁହଁକୁ , ସେ ତା ମୁହଁକୁ
ଚାହିଁଲେ , ହଜାରେ ସୁନା ଟଙ୍କା କିଛି ଅଳପ ନୁହେଁ,
ଗୋଟାଏ ତ ରାତି ।
କିଏ ଭାବିଲା - ଆରେ ବାପ୍‌ରେ , ସନ୍ନିପାତ ହୋଇଯିବ।
ବଞ୍ଚିଲେ ତ ଭୋଗ କରିବ । 'ଏ ଦେହ ଥିଲେ ସବୁ ପାଇ'।
ଜଣେ ହେଲେ କାହାରି ସାହସ ପାଇଲା ନାହିଁ । ମୁଣ୍ଡ
କାଞ୍ଜୁରି ତଳକୁ ମୁହଁ ପୋତି ସମସ୍ତେ ଠିଆ ହେଲେ ।
ରଜା ଆଜ୍ଞା ଦେଲେ - ରାଜ୍ୟରେ ଢେଣ୍ଟେରା ଦିଅ,
ଏ ପଦ୍ମ ପୋଖରୀରେ ବେକଯାଏ ଯେ ରାତିଏ ବୁଡ଼ି
ରହି ପାରିବ , ସେ ହଜାରେ ସୁନା ଟଙ୍କା ପାଇବ ।
ମାଦନାର ଘରେ ଖାଇବାକୁ ନାହିଁ । ସେ ଭଗରୁଲା-
ସବୁଦିନ ମରିବା ଅପେକ୍ଷା ଦିନେ ମରିବା ଭଲ ।
ଆଇଗବଳ ଥିଲେ ମାରିବ କିଏ ? ହରି ରଖିଲେ ବା
ମାରିବ କିଏ ? ହରି ମାରିଲେ ବା ରଖି ପାରିବ କିଏ?
ଯାହା ଯୋଗ ଥିବ, ହେବ । ଜୀବନ ଯାଉ ନାଇଲେ
ରହୁ ।

ସାହସେ ବଞ୍ଚି
ସାହସେ ମରି

ଯାହାସେ ଘର ଦୁଆର କରି ।

ମଦନା ଆସି ତୁମ୍ଭଂରେ ଦେଖା କଲା । ରଜା କହିଲେ — ତୁମେ ମୋର ମୁଲକର ଲୋକ ହୁଅ, ମୋର ଗାଁର ଲୋକ ହୁଅ, କିନ୍ତି ଯାଏ ଆସେନା, ଆମ ପଦ୍ମ ପୋଖରୀରେ ବୁଡ଼ି ଯାଇ ରାତିଏ ରହିପାରିବ, ତେବେ ହଜାରେ ସୁନା ଟଙ୍କା ଇନାମ ଦେବି ।

ମଦନା ଗୁଡ଼ାଏ ତେଲ ଲଗାଇ ହେଲା — ଯେମିତି ଦେହରେ ପାଣି ନ ଭେଦିବ । ଆଣ୍ଠୁଏ, ଜଙ୍ଘେ, ଅଣ୍ଟାଏ, ପରପରେ ବେକେ ପାଣିରେ ପଶିଲା । ସେହିପରି କିଛି ସମୟ ସ୍ଥିର ହୋଇ ରହିଲା, ପହରକ ପରେ ଗୋଡ଼ଟି ବସିଲେ ବେକେ ପାଣି ହବ, ବସି ରହିଲା । ଆଗ ଶୀତ ହେଲା, ଦେହ ଥରିଲା, ତା ପରେ ଦେହଟା କାଠ ହୋଇଗଲା । ରଜାଙ୍କ ଦୁଆରରେ ଜଳୁଥିବା ଗୋଟିଏ ଆଲୁଅକୁ ଚାହିଁ ଥାଏ, ଏତେ ଶୀତରେ ପାଣି ଭିତରେ ବି ମଦନାକୁ ଟିକିଏ ନିଦ ଲାଗିଲା, ତା ଆଖି ଫିଟିଲା ବେଳକୁ ଦେଖିଲା — ସକାଳ ହେଲାଣି । ରଜାଙ୍କ ଜଗୁଆଳୀମାନେ ଡାକିଲେ — ମଦନ ଉଠିଆସ ଆମେ ସାକ୍ଷୀ ରହିଲୁ ।

ମଦନା ଶୁଖିଲା ଲୁଗା ପାଲଟି ଯାଇ ତୁମ୍ଭଂରେ ଦେଖା କଲା । ରଜା ପଚାରିଲେ — ଏତେ ଶୀତରେ ତୁ କେମିତି ଏ ଜଳ ପୋଖରୀରେ ରହିଲୁ ? ମଦନା କହିଲା — ତୁମ୍ଭଙ୍କ ଦୁଆର ଆଲୁଅକୁ ଚାହିଁ ଚାହିଁ ରାତିଟା ପାହିଗଲା ।

ରଜା କହିଲେ — ଆମ ଆଲୁଅ ଲାଗି ଯାହା ତୋତେ ଶୀତ କଟୁ ବାଧିଲା ନାହିଁ । ସୁନା ଟଙ୍କା ତେବେ ଆମର ; ତୁ କାହିଁକି ନବୁ ?

ଏ କଥା ଶୁଣି ମଦନା ଥକ୍କା ହୋଇ ବସିଗଲା, ସତେ ଯେମିତି ତା ମୁଣ୍ଡରେ ଆକାଶ ଛିଡ଼ି ପଡ଼ିଲା। ରାଜା ଲୋକ, ଯାହା ବୁଝିଥିବେ ସେଇଆ। ତାଙ୍କୁ ବୁଝାଇବ କିଏ? ମଦନା ଚାଲି ଆସି ଆସି ଘରକୁ ଫେରିଲା।

ମୁହଁଟି ଶୁଖି ଯାଇଛି; ଘରକୁ ଫେରୁଛି; ଦେଖାହେଲା ଜଣେ ପଣ୍ଡିତଙ୍କ ସଙ୍ଗେ। ପଣ୍ଡିତେ ପଚାରିଲେ — କିରେ, ଏତେ ମୁହଁ କାହିଁକି କରିଛୁ?

ମଦନ କହିଲା — ମୋ ଦୁଃଖରେ ମୁଁ ଯାଉଛି; ମୋ ମୁହଁ ଶୁଖିଲା ତ କଣ ହେଲା? ତୁମେ ଭଲ ଲୋକ, ତୁମ ବାଟେ ବାଟେ ଯାଅ। ମତେ ପଚାରୁଛ କାହିଁକି? ଦେବ ନା ନେବ? ମୋ ଦୁଃଖ ମୋର, ତୁମ ସୁଖ ତୁମର।

ପଣ୍ଡିତେ କହିଲେ — ଆରେ, ତୁ ତ ଆଚ୍ଛା ଲୋକ; ଏତେ ମୁହଁଟାଏ କରିଛୁ; ମୁଁ ପଚାରିଲେ କଣ ଦୋଷ ହେଲା? ଏମିତି କଣ ପଚାରନ୍ତି, ନାହିଁ? କଣ ହୋଇଛି ମୋତେ କହ; ପାରିଲେ ମୁଁ କିଛି କରିବି।

ମଦନ କହିଲା — ଏମିତି ଏମିତି କଥା; ଜୀବନକୁ ମୂର୍ଚ୍ଛା କଲି; ପଇସାଟିଏ ବି ପାଇଲି ନାହିଁ।

ପଣ୍ଡିତେ କହିଲେ — ମୋ ସାଙ୍ଗେ ଆ; ଦେଖିବୁ, ରଜା କେମିତି ତୋ ପାଉଣା ନଦେବେ। ପଣ୍ଡିତେ ରାଜଧାନୀ ମଝି ଜାଗାରେ ତମ୍ବୁ ପକାଇଲେ — ମଦନକୁ କହିଲେ — ଯା, ରୋଷେଇ ଯୋଗାଡ଼ କର। ଘଡ଼ିକେ ଭିତରେ ମଦନା କାଠ, ନିଆଁ, ଚୁଲି, ଡାଲି, ପରିବା,

- ୩୪ -

ହାଣ୍ଡି ସବୁ ଯୋଗାଡ଼ କରି ଆଣିଲା ।

ହାଣ୍ଡିରେ ପାଣି ପୂରା ହେଲା ; ଚାଉଳ ପଡ଼ିଲା । ଜଣେ ଲୋକକୁ ତାଳ ଗଛରେ ଚଢ଼ାଇ ପଣ୍ଡିତେ ଗଛ ଅଗରୁ ହାଣ୍ଡିଟି ବନ୍ଧାଇଲେ । ଗଛ ମୂଳରେ ଏଣେ ନିଆଁ ଯୋଗାଡ଼ିଲେ ଧୂଆଁ ଉଠିଲା, ନିଆଁ ଜଳିଲା । ଲୋକେ ବୁଝିଲେ — ବୋଧେ ପଣ୍ଡିତଙ୍କୁ ଶୀତ ହେଉଛି, ନିଆଁ ପୋଉଁଛନ୍ତି ।

ଜଣେ ଲୋକ ଆସି ପଚାରିଲା — ଆଜ୍ଞା, ଏ ଅଡ଼ିକାଟା କାହିଁକି ତାଳ ଗଛରେ ଝୁଲୁଛି ? ତା ମୂଳରେ କାହିଁକି ନିଆଁ ଜଳୁଛି ?

ପଣ୍ଡିତେ ହସି ହସି କହିଲେ — ରୋଷେଇ ହେଉଛି ପରା !

ଲୋକଟି କଥାଟାକୁ ନାପସନ୍ଦ କରି ହସି ହସି କହିଲା — ରୋଷେଇ ? ଏମିତି କେଉଁଠି ରୋଷେଇ ହୁଏ ? ଆକାଶରେ ହାଣ୍ଡି, ପାତାଳରେ ଚୁଲୀ ? ଏ ପଣ୍ଡିତଙ୍କ ମୁଣ୍ଡ ଖରାପ ହୋଇଗଲାଣି !

କଥାଟା ରଜାଙ୍କ କାନରେ ବାଜିଲା । ଏମିତି ପାଗଳ ଏ ପୃଥିବୀରେ ଅଛନ୍ତି ? ରଜା ପଣ୍ଡିତଙ୍କୁ ଡକାଇ ପଚାରିଲେ — ଏ କି କାମ କରୁଛ ? ରାଜ୍ୟଯାକ ଲୋକେ ହସୁଛନ୍ତି — ତଳେ ଚୁଲୀ ; ତାଳଗଛ ଉପରେ ହାଣ୍ଡି । ଏମିତି ପଚାଶ ବର୍ଷ ନିଆଁ ଜାଳିଲେ ଭଲା ହାଣ୍ଡିରେ ଆଞ୍ଚ ବାଜିବ ? ଭାତ ହେବ, ତମେ ଖାଇବ, ଏ ଅସମ୍ଭବ କଥା ।

ପଣ୍ଡିତେ କହିଲେ — ରୋଷେଇ ହୋଇପାରିବ ସ୍ୱାମୀ, କାହିଁକିନା ସ୍ୱାମୀଙ୍କ ରାଜ୍ୟ ସୀମା ଭିତରେ ମୁଁ ରୋଷେଇ କରୁଛି, ଏଠି ତ କେତେ ଆଶ୍ଚର୍ଯ୍ୟ କଥା ହୋଇଯାଉଛି ।

ରଜା କହିଲେ — କଣ ?

ପଣ୍ଡିତେ କହିଲେ — ନାଦ ବ୍ରାହ୍ମଣଙ୍କ ଉଆସ ଆଲୁଅକୁ ଚାହିଁ ଜଣେ ଶୀତ ଦିନେ ପୋଖରୀରେ ବଞ୍ଚି ରହି ପାରୁଛି, ମୋର ରୋଷେଇ ହୋଇ ପାରିବ କାହିଁକି ?

ରଜା ସବୁ କଥା ବୁଝି ପାରିଲେ । ମଦନାକୁ ଡାକି ଭାରି ଖାଇବାକୁ ଦେଲେ, ପାଟଲୁଗା, ସୁନା ମୁଦି ଦେଲେ, ହଜାରେ ସୁନା ଟଙ୍କା ଦେଲେ ।

ମୋ କଥାଟି ସରିଲା ।

# ବେଲବତୀ କନ୍ୟା କଥା

ଗୋପାଳ ଚନ୍ଦ୍ର ପ୍ରହରାଜ

ଗୋଟାଏ ରାଇଜରେ ଏକ ରଜା ଥାଏ ଯେ, ସେ ରଜାର ଗୋଟିଏ ପୁଅ। ସେ ପୁଅଟିକୁ ରଜା ବିଭା କରେ ନାହିଁ। ସେ ପୁଅଟି ତା ମନେ ବିଚାରେ କେ ଜାଣି ଆଜି ଅବା ମୋତେ ବାପା ବିଭା କରିବେ, କେ ଜାଣି କାଲି ଅବା ମୋତେ ବିଭା କରିବେ, କେ ଜାଣି ମାସକ ବାଦ ବିଭା କରିବେ, କେ ଜାଣି ବର୍ଷେ ଗଲେ ବିଭା କରିବେ ଅବା — ଇମିତିକା ରଜାପୁଅ ଚାହିଁ ଚାହିଁ ଦିନ ଯାଏ, ମାସ ଯାଏ, ବରଷ ଯାଏ — କେଭେଁ ରଜା ସେ ପୁଅଟିକୁ ବିଭା କଲେ ନାହିଁ। ସେ ପୁଅଟି କହିଲା, ଯେବେ ମୋତେ ବାପ ବିଭା କଲେ ନାହିଁ, ମୋର ଏ ଜୀବନ ରଖିବାରେ କିଛି କାରଣ ନାହିଁ, ଯାଉଚି କୁଆଡ଼େ ପଳେଇଯିବି। ରଜାପୁଅ ଏହା ଭାବି ଘୋଡାଶାଳରୁ ଗୋଟିଏ ପକ୍ଷୀରାଜ ଘୋଡା ବାଛିଲା, ପାଗପଟୁକା, ହୁଡ଼ ହୁଡ଼ିଆର ବାନ୍ଧିଲା-ଟଙ୍କା ଟୋକର କିଛି ଧରି ବିଦେଶ ଗଲା। ଯାଉଁ ଯାଉଁ ଏକ ଅଗନାଗି ବନସ୍ତ ପଡ଼ିଲା, ସେ ବନସ୍ତ ଭିତରେ କୁଆର ଥଣ୍ଟ ନାହିଁ କି ଚଢେଇର ବେଣ୍ଟ ନାହିଁ, ସେ ରଜାପୁଅ ଅନେକ ଦୂରକୁ ଚାହିଁଲାବେଳକୁ ଗୋଟିଏ କମାରୁଣୀ ଘଣ୍ଟି ଟୋକେଇ ଧରି ଯାଉଅଛି। କମାରୁଣୀଟି ସେ ରଜାପୁଅକୁ ଚାହିଁ

କହିଲା, ହଇରେ ବାପ ! ତୁ ତ ରଜାପୁଅ ଭଳିଆ ଦିଶୁଛୁ, ତୁ କାହିଁକି ଏ ଦେଶକୁ ଆସିଲୁ ? ଅପୂଜା ଠାକୁରାଣୀ ତ ହେ ପାଖରେ ପାନକଟାଏ ପାକେଇ ବସିଛି, ଏଇଲାଗେ ତ ତତେ ଖାଇଯିବ, ଆହା ! କାହିଁକି ଏ ଦେଶକୁ ଆସିଲୁ ? ଏବେ ଫେଂରିଯାଆ । ରଜାପୁଅ କହିଲା— "ହିଁ ଲୋ ମାଉସୀ ! ସେ ଅପୂଜା ଠାକୁରାଣୀ ମତେ ଖାଇଲେ ଖାଉ ପଛକେ, ମୁଁ ତ ମରିବାକୁ ଆସିଚି, ମୋର ସେ କଥାରେ କିଛି ଭୟ ନାହିଁ ଲୋ ମାଉସୀ" ଏହା କହି ରଜାପୁଅ ସେହି ବାଟେ ଗଲାବେଳକୁ ଅପୂଜା ଠାକୁରାଣୀ ଠିଆ ହୋଇ ଆଖିମାନ ଦେଖାଇ ଚମକାଇ ରଜା ପୁଅକୁ କହିଲା ଆରେ ବାପ ! ମୋର ଛଅ ଦିନ ଉପାସକୁ ଆସି ତୁ ଆହାର ମିଳିଲୁ, ଅବଶ୍ୟ, ଆ, ମୁଁ ତତେ ଖାଇବି। ରଜାପୁଅ କହିଲା ଯେବେ ଖାଇବୁ ତେବେ ଖାଆ । ଅପୂଜା ଠାକୁରାଣୀ କହିଲା, ତୁ ଘୋଡା ଉପରୁ ତଳକୁ ଓହ୍ଲାଇ ଆସିଲେ ମୁଁ ଖାଇବି । ରଜାପୁଅ କହିଲା, ମୁଁ କେବେହେଁ ତଳକୁ ଯିବି ନାହିଁ । ଅପୂଜା ଠାକୁରାଣୀର ତ ଘୋଡା ହୁଏ ବାହନ, କିମିତିକା ଘୋଡା ଉପରୁ ସେ ଟୋକାକୁ ନେଇ ଖାଇବ କି ? ଇମିତିକା ଅନେକ ଥର ସେ ରଜାପୁଅକୁ ଡାକି ଡାକି ଥକା ହୋଇ ଅପୂଜା ଠାକୁରାଣୀ ରହିଲା, କେବେହେ ସେ ରଜାପୁଅ ଘୋଡା ଉପରୁ ଓହ୍ଲାଇ ନ ଆସେ, ଶେଷବେଳକୁ ଅପୂଜା ଠାକୁରାଣୀ କହିଲା, ଆରେ ତୁ ଭାରି ସିଆଣିଆ ଟୋକା, ତୋ ଦମ୍ଭ ଦେଖି ମୁଁ ଭାରୀ ପ୍ରସନ୍ନ ହୋଇଗଲି । ତୋ ମନ ଅଛି, କି ବର ମାଗିବୁ ମାଗ । ରଜାପୁଅ କହିଲା — ମୁଁ କି ବର ମାଗିବି କି ? ମତେ ଗୋଟିଏ ମୋ ମନଲାଖି କନ୍ୟା ଦିଅ । ଅପୂଜା ଠାକୁରାଣୀ କହିଲା, ଆରେ ଶୋଠି ପଶ୍ଚିମ ଆଡ଼କୁ ଯାଉଁ ଯାଉଁ ଏକ ଅସୁର ରାଇଜ ପଡ଼ିବ, ତୁ ସେ ରାଇଜରେ ଅସୁରଙ୍କ ଘରେ

ପହୁଞ୍ଚିଲାବେଳକୁ ଅସୁରମାନେ ଚରି ବୁଲି ଯାଇଥିବେ, ତୁ କ'ଣ କରିବୁ ନା, ତାଙ୍କ ଘର ଦୁଆର ଓଳାଇବୁ, ତାଙ୍କ କଂସା ବାସନ ମାଜିବୁ, ତାଙ୍କମାନଙ୍କ ପାଇଁ ଦୁଇ ଶହ ହାଣ୍ଡି ଭାତ କରିବୁ, ଶହେ ହାଣ୍ଡି ତିଅଣ କରିବୁ। ସନ୍ଧ୍ୟାବେଳକୁ ଅସୁରମାନେ ଚରି ବୁଲି ଫେରି ଆଇଲା ବେଳକୁ ତୁ କିଛି ଦିନ ଉଗାଡ଼ ଉପରେ ଲୁଚିଯିବୁ। ଅସୁରମାନେ ଯୋଉଁଦିନ କହିବେ, ଆରେ ବାପା ତୁ କିଏ? ଆମେ ତୋ ଉପରେ ଭାରି ସନ୍ତୁଷ୍ଟ ହେଲୁଣି, ତୁ କିଏ ସେ? ଏଠାକୁ ଆ। ଯୋଉବେଳେ ଅସୁରମାନେ ଏ କଥା କହିବେ, ତୁ ଆସି ସମସ୍ତଙ୍କ ଗୋଡ଼ତଳେ ପାଳ ପଡ଼ି ବେକରେ ପଘେଇ ପଡ଼ିଯିବୁ। ଅସୁରମାନେ ଯୋଉବେଳେ କହିବେ, ଆମ୍ଭମାନଙ୍କୁ କି ବର ମାଗିବୁ ମାଗ, ତୁ କହିବୁ ତୁମ ଘରେ ଯୋଉଁ ଉତ୍ତମ ସୁନ୍ଦର କନ୍ୟାଟି ଅଛି, ତାକୁ ମତେ ଦିଅ, ରଜାପୁଅ ଏ କଥା ଶୁଣିଲା ମାତ୍ରକେ ପକ୍ଷିରାଜକୁ ଘୋଡ଼ାକୁ ମାରି କରି ଗଲା। ଯାଉଁ ଯାଉଁ ଏକ ଅସୁର ରାଇଜ ପଡ଼ିଲା, ସେ ଅସୁରଙ୍କ ଘରକୁ ଗଲା ବେଳେ ଅସୁରମାନେ ଚରି ବୁଲି ଯାଇଥିଲେ। ଏ ରଜାପୁଅଟି ସେ ଘରକୁ ଯାଇ ଅସୁରଙ୍କ କଂସା ବାସନତକ ଚିକ୍‌କଣ କରି ମାଜିଲା। ତାଙ୍କ ଘର ଦୁଆର ଓଳାଇଲା, ତାଙ୍କମାନଙ୍କ ପାଇଁ ଦୁଇ ଶହ ହାଣ୍ଡି ଭାତ ରାନ୍ଧିଲା, ଶହେ ହାଣ୍ଡି ତିଅଣ ରାନ୍ଧିଲା, ରଜାପୁଅ ତ ସୁକୁମାରିଆ, ତା'ର ତ ଚଢ଼େଇଟାକର ଆହାର, ଉପରୁ ଗଣ୍ଡିଏ ଭାତ ଖାଇ ଦେଇ ଉଗାଡ଼ ଉପରେ ଯାଇଁ ଲୁଚି କରି ବସିଲା। ଅସୁରମାନେ ଚରି ବୁଲି ଆସିଲା ବେଳକୁ ଦେଖିଲେ, ଘର ଦୁଆର ଓଳାଓଳି ହୋଇ ଅଛି, କଂସାବାସନ ମଜାମଜି ହୋଇଅଛି, ଦୁଇଶହ ହାଣ୍ଡି ଭାତ, ଶହେ ହାଣ୍ଡି ତିଅଣ ରନ୍ଧା ହୋଇ ଥୁଆ ହୋଇଛି। ଅସୁରମାନେ ଯେବେ

କିଏ କରିଛି ବୋଲି ସେତିକି ଭାତ ତିଅଣ ଗୋଟିଗୋଟି ଖାଇଲେ। ତେଣୁ ତହିଁ ଆରଦିନ ଅସୁରମାନେ ସକାଳୁ ଉଠି ଚରି ବୁଲି ଗଲା ପରେ ରଜାପୁଅ ଯାଇ କଂସାବାସନ ମାଜାମଜି କରି ଘର ଦୁଆର ଓଳାଇ, ଭାତ ତିଅଣ ରାନ୍ଧି କାଲି ଭଳିଆ ଉପରୁ ଉପରୁ ଗଣ୍ଡିଏ ଭାତ ଟୋକି ଦେଇ ଉଗାଡ଼ ଉପରେ ଯାଇ ବସିଲା। ଅସୁରମାନେ ଚରି ବୁଲି ଆସିଲାବେଳକୁ ପୁଣି ସେମିତିକା ଭାତ, ତିଅଣ ରନ୍ଧା ହୋଇ ଥୁଆ ହୋଇଛି, ସେମାନେ ଆସିଲାକ୍ଷଣି ଖାଇ ବସିଲେ। ଏମିତିକା ସବୁଦିନ କରୁଥାଏ ଦିନକରେ ଅସୁରମାନେ କହିଲେ ଆରେ ବାପ ! ତୁ କିଏ ସେ ? ଆମ୍ଭମାନଙ୍କୁ ଏତେ ସେବା କଲୁଣି, ଏତେ ଖାଇବାକୁ ଦେଲୁଣି, ତୋ ଉପରେ ଆମ୍ଭେମାନେ ଭାରି ପ୍ରସନ୍ନ ହେଲୁଣି। ତୁ କିଏ ସେ, ଏଣିକି ଆ, ରଜାପୁଅ ଉଗାଡ଼ ଉପରୁ ଖସି ଆସି ପାଲଦଉଡ଼ି ବେକରେ ପକାଇ ଦାନ୍ତରେ କୁଟା ଦେଇ ଅସୁରମାନଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲା। ଅସୁରମାନେ କହିଲେ ଆରେ ବାପ ! ତୁ କି ବର ମାଗିବାକୁ ଇଚ୍ଛା କରୁଚୁ, ମାଗ, ରଜାପୁଅ କହିଲା, ତୁମ ଘରେ ଗୋଟିଏ କନ୍ୟାଟି ଅଛି, ମୋତେ ସେ କନ୍ୟାଟିକି ଦିଅ, ଅସୁରମାନେ କହିଲେ, ଆହା କି କଲୁ ? ଆମର ଗୋଟାଏ ବେଲବତୀ କନ୍ୟାକୁ ମାଗିଲୁ, ହଉ ବାପ, ମାଗିଲୁଣି ତ ନବୁ। ଆଜି ଆମ ବେଲବତୀ କନ୍ୟାକୁ ଅପବାଟରେ ପକାଇବୁ ନାହିଁ, ତୋ ନଅରରେ ପହଞ୍ଚିଲେ ଡାକିବୁ, 'ଉଠ ଗୋ ବେଲବତୀ'। ଅସୁରମାନେ ଏହା କହି ରଜାପୁଅକୁ ବେଲଟିଏ ଦେଇ କହିଲେ, ଏ ବେଲ ଭିତରେ କନ୍ୟାଟି ଅଛି, ରଜାପୁଅ ମହା ଆନନ୍ଦ ହୋଇ ସେ ବେଲଟିକୁ ଧରି ତା ରାଇଜକୁ ଫେରି ଆସୁ ଆସୁ ରଜାଙ୍କ ଉଆସ ପାଟୁଆ ଜୁଅ ପାଖରେ

ପଡ଼ିଥିଲା, ରଜାପୁଅ କହିଲା, ଦେଖି କମିତିକା ସତରେ କି ମିଛରେ ବେଲବତୀ କନ୍ୟା । ଏହା କହି ରଜାପୁଅ ସେ ବେଲକୁ କହିଲା 'ଉଠ ଗୋ ବେଲବତୀ' । ରଜାପୁଅ ଏହା କହି ଥକିଲା ମାତ୍ରକେ ସେ ବେଲ ଭିତରୁ ଗୋଟିଏ ଦିବ୍ୟ ସୁନ୍ଦର ଯୁବା କନ୍ୟାଟିଏ ପାଟ ପାଟାମ୍ବରୀ ପହିରଣ ହୋଇ ଦିବ୍ୟ ଅଳଙ୍କାର ପିନ୍ଧି ଝୁଣ୍ଟୁ ଝୁଣ୍ଟୁ ହୋଇ ବାହାରି ପଡ଼ିଲା, ରଜାପୁଅ ସେ ଦିବ୍ୟସୁନ୍ଦର ବେଲବତୀ କନ୍ୟା ରୂପକୁ ଚାହିଁ ଚାହିଁ ସେହି କୂଅ ପାଖରେ ମୂର୍ଚ୍ଛା ହୋଇ ପଡ଼ିଗଲା । ଯାହା ଦେଖି ବେଲବତୀ କନ୍ୟା କାନ୍ଦି ବୋବେଇ ସେହିଠାରେ ଘୋଡ଼ାକୁ ବାନ୍ଧି ଦେଇ ରଜା ପୁଅର ଗୋଡ଼ ଘଷି ବସିଲା । ଏଥିମଧ୍ୟରେ କ'ଣ ହୋଇଛି କି, ଗୋଟିଏ କୁଣ୍ଡାଭୁଷୁଣ୍ଡୀ ଆସି ବେଲବତୀ କନ୍ୟାର ତଣ୍ଟି ଚିପି ମାରି ଦେଇ ସେ କୂଅରେ ପକାଇ ଦେଇ ସେ ବେଲବତୀ କନ୍ୟାର ପହିରଣ ଆଉ ଅଳଙ୍କାର ତକ ପିନ୍ଧି ପକାଇ ଯିମିତିକା ବେଲବତୀ କନ୍ୟା ରଜାପୁଅର ଗୋଡ଼ ଘଷି ଆଉଁଷୁ ଥିଲା, ସେମିତିକା ଏ କୁଣ୍ଡା ଭୁଷୁଣ୍ଡୀଟି ରଜା ପୁଅର ଗୋଡ଼ ଘଷୁଛି । କେତେବେଳକୁ ରଜାପୁଅର ଚେତା ହୋଇ ଦେଖିଲା ବେଳକୁ କୁଣ୍ଡାଭୁଷୁଣ୍ଡୀଟାଏ ତା ଗୋଡ଼ ଘଷୁଛି । ରଜାପୁଅ ମନ ଦୁଃଖ କରି କହିଲା, ଆହା କି ସୁନ୍ଦର ସ୍ତ୍ରୀରୂପଟିଏ ଦେଖିଥିଲି, ଏ କୁଣ୍ଡାଭୁଷୁଣ୍ଡୀ ରୂପଟାଏ କେଉଁଠୁ ବାହାରିଲା ମ ? ରାଜପୁଅ ତ ଭୋଳ, ଏତେ ଛନ୍ଦମାନ କାହୁଁ ଅବା ଜାଣିବ ? ମନରେ ଭାବିଲା ହୁଁ, ଅସୁର ରାକ୍ଷସର ବେଲବତୀ କନ୍ୟା ତ, କେତେବେଳେ କେଉଁ ରୂପ ବାହାରିଲା । ରଜାପୁଅ ଏହା କହି ସେ କୁଣ୍ଡାଭୁଷୁଣ୍ଡୀକୁ ନେଇ ନଅର ଭିତରକୁ ଗଲା । ନଅର ପାଖରେ ଲୋକେ ମନୁଷ୍ୟ ରଜାପୁଅ ନୂଆ ବୋହୂରାଣୀଙ୍କୁ ଦେଖି

କରି ମହା ଆନନ୍ଦ ହେଲେ । ଏ କହିଲା, ନୂଆ ରାଣୀ ଆସିଚ୍ଛନ୍ତି, ସେ କହିଲା ନୂଆ ରାଣୀ ଆସିଛନ୍ତି, କହାକହି ହୋଇ ଚୁପ ହୋଇଗଲେ । ତହୁଁ ଆରଦିନ ବେଲବତୀ କନ୍ୟା ଯୋଉଁ କୂଅରେ ପଡ଼ିଥିଲା, ସେ କୂଅରେ ଯୋଡ଼ିଏ ପଦ୍ମଫୁଲ ଫୁଟିଛି । ରାଜାଙ୍କ ମାଳୀ ସେ କୂଅକୁ ପାଣି ଆଣିବାକୁ ଗଲାବେଳେକୁ ଦେଖିଲା ଯେ, କୂଅରେ ଯୋଡ଼ିଏ ଉତ୍ତମ ସୁନ୍ଦର ପଦ୍ମଫୁଲ ଫୁଟିଅଛି । ମାଳୀ ସେ ଫୁଲ ଯୋଡ଼ିକ ଦେଖି କହିଲା ଯାଉଚି, ଏ ପଦ୍ମଫୁଲ ଯୋଡ଼ିକ ନେବି, ଗୋଟିଏ ରଜାପୁଅଙ୍କୁ ଦେବି, ଆଉ ଗୋଟିକ ନୂଆ ବୋହୂ ମଣିମାଙ୍କୁ ଭେଟିବି । ମାଳୀ ଏହା କହି ସେ ଫୁଲ ଯୋଡ଼ିକ ନେଲା, ଗୋଟିଏ ଫୁଲ ରଜାପୁଅଙ୍କୁ ଦେଲା, ଆଉ ଗୋଟିଏ ଫୁଲ ବୋହୂ ମଣିମାଙ୍କୁ ଦେଲା । ରଜାପୁଅ ତା ଫୁଲଟିକ ଆଣି ନୂଆ ରାଣୀଙ୍କି ଦେଲା । ନୂଆ ବୋହୂ ରାଣୀ ରଜାପୁଅଙ୍କୁ କହିଲା ହଇ ହେ, ଏ ଫୁଲ ଯୋଡ଼ିକ କେଉଁଠି ଫୁଟିଥିଲା କି ? ରଜାପୁଅ କହିଲା, ମୁଁ ଜାଣି ନାହିଁ, ମାଳୀକି ପଚାରେଁ । ରଜାପୁଅ ମାଳୀକୁ ପଚାରିଲା — ହଇରେ ମାଳୀ ! ଏ ପଦ୍ମଫୁଲ କେଉଁଠେଇଁ ଫୁଟିଥିଲା ମ ? ମାଳୀ କହିଲା — ଆଜ୍ଞା । ଉଆସ ପଛପଟ କୂଅରେ ଫୁଟିଥିଲା । ମାଳୀଠାରୁ ରଜାପୁଅ ଶୁଣି ବୋହୂରାଣୀଙ୍କୁ କହିଲା — ଆମ କୂଅରେ ଏ ଫୁଲ ଯୋଡ଼ିକ ଫୁଟିଥିଲା । କୁଣ୍ଡୁଭୁଷୁଣ୍ଡୀ ତ ସେ କୂଅରେ ବେଲବତୀ କନ୍ୟାକୁ ହାଣିପକାଇ ଦୋପାଡ଼ି ଥିଲା, ତା ମନରେ ସେହି କଥାରେ ଭୟ ପଶି ଯାଇଥିଲା ; ବେଲବତୀ କନ୍ୟାର ଏ ଗୁଣ ! ଏହା ଭାବି କରି ଯାଇ ରଜାପୁଅଙ୍କୁ କହିଲା ; ଏ ଫୁଲ ଯୋଡ଼ିକ ନିଅ, ଆମ ଉଆସ ପଛ ପଡ଼ିଆରେ ଟିକି ଟିକି କରି ଛିଣ୍ଡେଇ ଦେବ, ଯେବେ ଛିଣ୍ଡିବାର ମୁଁ ଦେଖିବି, ତେବେ ଯାଇ ଏ ଜୀବନ ରଖିବି, ଯେବେ ନ ଛିଣ୍ଡିବ, ଏ ଜୀବନ

କେବେ ରଖିବ ନାହିଁ । ରଜାପୁଅ ଏହା ଶୁଣି ଥରହର ହୋଇ ଭଜେ ଯାଇଁ ସେ ପଢ଼ିଆରେ ପଦ୍ମଫୁଲ ଯୋଡ଼ିକ କୁଟିକୁଟା କରି ଛିରି ପକାଇ ଆସିଲା । ତହିଁ ଆର ଦିନ ଦେଖିଲା ବେଳକୁ ସେ ପଢ଼ିଆ ଭିତରେ ଗୋଟିଏ ବେଲ ଗଛ ହୋଇଅଛି; ତେଂର ମାଳୀ ଆରଦିନ ସକାଳୁ ଗଲା ବେଳକୁ ଗୋଟିଏ ବେଲଗଛ ହୋଇ ସେ ଗଛରେ ଯୋଡ଼ିଏ ବେଲ ଫଳିଛି । ମାଳୀ ତା ଦେଖି ମହା ଆନନ୍ଦ ହୋଇ କହିଲା, ଯାଉଛି ଏ ବେଲ ଯୋଡ଼ିକ ନେବ ; ଗୋଟିଏ ରଜାଙ୍କୁ ଦେବ ଆଉ ଗୋଟିଏ ମୁଁ ରଖିବ । ଏହା କହି ମାଳୀ ସେ ବେଲ ଯୋଡ଼ିକ ତୋଳି କରି ନେଇ ରଜାଙ୍କୁ ଗୋଟିଏ ଦେଲା, ମାଲୁଣୀଙ୍କ ଗୋଟିଏ ଦେଲା, ବେଲ ଯୋଡ଼ିକ ବନ ହଳଦୀ ଭଳିଆ ଦିଶୁଥାଏ । ମାଲୁଣୀ ସେ ବେଲଟିକୁ ମହା ଆନନ୍ଦରେ ରଖିଲା । ମାଳୀ କହିଲା, ହଇ ଲୋ, ଚାଲ ଏ ବେଲଟିକୁ ଭାଙ୍ଗିକରି ଖାଇବା । ମାଲୁଣୀ ମହା ଆନନ୍ଦ ହୋଇ ଘରକୁ ଯାଇ କଟୁରୀ ଆଣି ଚୋଟେ ଚଟେଇଲା ବେଳକୁ ସେ ବେଲ ଭିତରୁ ବେଲବତୀ କନ୍ୟାଟି କହିଲା, ମାଉସୀ ଲୋ ମାଉସୀ ! ଏ ପାଖରୁ ହାଣ, ସେ ପାଖରୁ ହାଣ, ମଝିକି ହାଣ ନା, ମାଲୁଣୀ ବେଲ ଭିତରୁ ମଣିଷଗଳୁଣ୍ଡ ଶୁଣିଲାକ୍ଷଣି ଚମକି ପଡ଼ି ସେ ବେଲଟିକୁ ଫିଙ୍ଗି ଦେଲା ବେଳକୁ ବେଲବତୀ କନ୍ୟା କହିଲା ମାଉସୀ ଲୋ ! ମୁଁ ବେଲବତୀ କନ୍ୟା, ମୁଁ ବେଲ ଭିତରେ ଥାଏ, ତୁ ମତେ ରଖ ! ତୋ ଘରେ ରଜାଠାରୁ କେତେ ବେଶୀ ଧନ ଦରବ ମାଡ଼ିଯିବ । ଏହା ମାଲୁଣୀ ଶୁଣିଲାକ୍ଷଣି ସେ ବେଲକୁ ଘୋଟାଇ ଆଣି ଏ ପଟରୁ ସେ ପଟରୁ ହାଣିଲାବେଳକୁ ଦିବ୍ୟ ସୁନ୍ଦର ଯୁବାବୟସୀ କନ୍ୟାଟିଏ ବେଲ ଭିତରୁ ବାହାରି ପଡ଼ି କହିଲା — ମାଉସୀ

ଲୋ ! ମୁଂ ଏତ ଘରେ ଅଛି ବୋଲି ରଜାଙ୍କ ଉଆସରେ ଅଜ କହିବୁ ନାହିଁ । ରଜା ଗୋଳା ; ସେ ରଜା ଶୁଣିଲେ ମତେ ପ୍ରାଣି ଘକାଇଦେବେ । ଏହା କହି ସେ ବେଲବତୀ କନ୍ୟା, ମାଲୁଣୀ ଘରେ ରହିଲା । କ୍ରମେ କ୍ରମେ ମାଲୁଣୀର ଦିନକୁ ଦିନ ରାଜାଠାରୁ ବେଶୀ ଧନ ସମ୍ପତ୍ତି ମାଡ଼ିଗଲା । ବେଲବତୀ କନ୍ୟା ବଡ଼ ରାତି ନ ପାହୁଣୁ ସେଣୁ ପୋଖରୀରେ ଗାଧୋଇ ପାଧୋଇ ମାଲୁଣୀ ଘରକୁ ଫେରେଇ ଆସେ । ଦିନକରେ ବେଲବତୀ କନ୍ୟା ଉଠୁ ଉଠୁ ରାତି ପାହି ଗଲାଣି, ସେ ତରବର ହୋଇ ଗାଧୋଇ କରି ବାହାରି ଆସୁଛି, କୁଣ୍ଡାଭୁଣ୍ଡୁଣୀ ଉଆସ କୋଠା ଉପରେ ଟହଲୁ ଥିଲା — ତାକୁ ଚିହ୍ନିଲା । ନଅରକୁ ଯାଇ ଗୋଟାଏ ଘରେ କବାଟ କିଳି ଶୋଇଲା ; କେ ଯେତେ ଡାକିଲେ ଶୁଣିଲା ନାହିଁ । ରଜାପୁଅ ଆସି ଡାକିଲା ବେଲକୁ କହିଲା, ସେ ମାଳିଘରେ ଗୋଟାଏ ଟୋକୀ ଅଛି ; ମତେ ସେ ଟୋକୀଟା ବଡ଼ଦିନ ଆମ ନଅରକୁ ଆସି ଗାଧୋଇ ହେଉଛି, ଗାଳି ଦେଉଛି, ସେ ଟୋକୀକୁ ଆଜି ମୋତେ ଖୁଣ୍ଟି ଦେବ ମୁଂ ଜୀବନ ରଖିବି, ଏହିକ୍ଷଣିକା ମୋତେ ସେ ମାଲୁଣୀ ଘର ଟୋକୀକୁ ଖୁଣ୍ଟି ନ ଦେବ, ତେବେ ଏ ଘଡ଼ିକା ଏ ଜୀବନ ନଷ୍ଟ ହରେଇ ଦେବି । ଏ କଥା ଯାଇ ରଜାଙ୍କ କାନରେ ପଡ଼ିଲା । ରାଜା ଏହା ଶୁଣି ରାଗରେ କମ୍ପମାନ ହୋଇ ପାତ୍ର ମନ୍ତ୍ରୀ ସାଥିକ କଟୁଆଳଙ୍କୁ ସାଙ୍ଗରେ ନେଇ ମାଳିଘରକୁ ବିଜେ କଲେ । ମାଳି, ମାଲୁଣୀ ଦୁହେଁଯାକ ବସିଛନ୍ତି — ରଜା ଯାଇଂ କହିଲେ, ମାଳି ! ତୋ ଘରେ ଗୋଟା ଟୋକୀ ଅଛି, ସେ ଟୋକୀ ବଡ଼ ଦିନ ଆମ ନଅର ଭିତରକୁ ଯାଇ ଆମ ନୂଆବୋହୂ ରାଣୀଙ୍କୁ ଗାଳିମାଳି କରୁଅଛି, ଆଜ ଗାଧୋଇ ହେଉଛି । ରଜା କହିଲେ- ମାଳି ! ସେ ଟୋକୀ ତୋହର କଅଣ ହୁଏ ? ମାଳି କହିଲା;- ଆଜ୍ଞା ! ସେ ଟୋକୀଟି ମୋ ମାଲୁଣୀର ଝିଆରୀ ; ମହିମା !

ସେ ତ କୁଆଡ଼କୁ ଯାଏ ନାହିଁ । ରଜା କହିଲେ – ମାଳି , ତୁ ଯୋଉ ସେ ଚୌକୀକୁ ଶୁଳି ଦବାକୁ ଆମକୁ ନ ଦେବୁ , ତୋର ଆଜି ହଣ୍ଟା ମୁଣ୍ଡକାଟ ହବ । ମାଳୀ ମାଲୁଣୀଙ୍କର ଆଉ କି ଗତ୍ୟା ? ଦି ଟାରାଣୀ ଭାଗୀ ବସି , ହୋଇ ସେ ଚୌକୀକୁ ଶୁଳିଆ ପଦାକୁ ରଜାଙ୍କ ଚାହୁଣରେ ବିଦା କରିଦେଲେ । ରଜା ସେ ଚୌକୀକୁ ଯୋଉ ଶୁଳିଆପଦାକୁ ଯାଇ ଶୁଳି ଦେଇ ଉଆସକୁ ବିଜେ କଲେ। ବେଲବତୀ କନ୍ୟା ଯୋଉଁଠାରେ ଶୁଳି ପାଇଥିଲା , ତହିଁ ଆରଦିନ ସକାଳକୁ ରାତିକ ଭିତରେ ସେ ଶୁଳିଥାନରେ ମନକୁ ଏକ ପଥର ପାଚେରି କୁଣ୍ଡ ଗୋଟିଏ ଦେଉଳ ଭିତରେ ମହାଦେବ ହୋଇ ଅଛନ୍ତି । ତହିଁ ଆରଦିନ ସମସ୍ତେ ଦେଖିଲାବେଳକୁ ଗୋଟିଏ ପାଚେରି କୁଣ୍ଡ ତା ଭିତରେ କ'ଣ ହୋଇଛି ନା ? ଦେଉଳଟିଏ ହୋଇଛି , ଦେଉଳ - ଭିତରେ ଏକ ମହାଦେବ ବାହାରିଛନ୍ତି । ଯୋତେ ଯୋତେ ଲୋକ ଦେଖିଲେ ସମସ୍ତେ କାବା ହୋଇ ରହିଲେ । କାଲି ଏତେବେଳକୁ ତ ଏଠେଇଁ କିଛି ଘର ଦୁଆରର ଚିହ୍ନ ନ ଥିଲା , ଆଜି କୁଉଁଠୁ ଏ ପାଚେରି ହୋଇ ଏ ମହାଦେବ ବାହାରି ଅଛନ୍ତି ନା ? ଏ କଥା ଦେଖି ସମସ୍ତେ ଆଚମ୍ବିତ ହେଲେ । କାହୁଁ କୋଉ କାହୁଁ ଆସି ମିଶିଗଲେ ମାଇପେ ମହାଦେବଙ୍କୁ ଦର୍ଶନ କରିବାକୁ ଲୁଣ୍ଡ ହେଲେ । ସମସ୍ତେ ଯାଇ ରଜାଙ୍କ ଆଗରେ ଜଣାଇଲେ – ମଣିମା ! ଯୋଉଁଠାରେ କାଲି ସେ ମାଇକିନା ପିଲାକୁ ଶୁଳି ଦେଇଥିଲ ଆଜ ସେଠେଇଁ ଏକ ମେଘନାଦ ପାଚେରି ହୋଇ ଦେଉଳ ଭିତରେ ଏକ ମହାଦେବ ବାହାରି ଅଛନ୍ତି । ରଜା ଏହା ଶୁଣିଲା ମାତ୍ରକେ ସେଠେଇଁକି ଯାଇ ଦେଖିଲାବେଳକୁ ସତକୁ ସତ ଏ ଘଟଣା । ସେଇଥିରୁ ରଜା ମାଳୀକି ଡାକେଇ କହିଲେ ମାଳି ! ତୁ ଏ ମହାଦେବଙ୍କ ପାଦବନ

ଗାଧୋଇ ଗାଧୋଇ ଫୁଲ ପାଣି ଲାଗି କରୁଥିବୁ । ଏବେ ଯାଇ ଆମକୁ ଦିଅଙ୍କ ପାଦୁକ ଦେଉଥିବୁ । ମାଳୀ ସେ ଦିନ ଯାଇ ସେ ମହାଦେବଙ୍କୁ ଗାଧୋଇ ଦେଇ ଫୁଲ ବେଲପତ୍ର ଚଢ଼େଇ ଫେରି ଆସିଲା ଓ ରଜାଙ୍କୁ ନେଇ ପାଦୁକ ଦେଲା । ଏମିତିକା ମାଳୀ ପ୍ରତିଦିନ ଯାଇ ସେ ମହାଦେବଙ୍କୁ ଗାଧୋଉଥାଏ , ଫୁଲ ବେଲପତ୍ର ଚଢ଼ଉଥାଏ। ଦିନକର ମାଳୀ ସେ ମହାଦେବଙ୍କୁ ପାଣିଲାଗି କଲାବେଳକୁ ଶୁଆଟିଏ ସାରୀଟିଏ ସେ ବେଲଗଛରେ ଗଛ ଡାଳରେ ବସିଛନ୍ତି । ଶୁଆ କହିଲା— ନାନୀ ଲୋ। ନାନୀ ! ଗୋଟିଏ କଥା କହନ୍ତୁ , ସାରୀ କହିଲା , ହଉରେ ଭାଇ ! ସତ କହିବ କି ମିଛ କହିବ ? ଯାହା ଆଖିରେ ଦେଖିଛି ତାହା କହିବ ? ସେତେବେଳେ ଏ ମାଳୀଟି ମହାଦେବଙ୍କୁ ଗମ୍ଭୀରା ଭିତରେ ଦିଅଁଙ୍କୁ ଗାଧୋଉଥାଏ । ବେଲବତୀ କନ୍ୟାକୁ କୁଣ୍ଡାଭୁଷୁଣ୍ଡୀ ଯେତେ ଯେତେ ଦୁଃଖ ଦେଉଥିଲା , ଯେତେ ଯେତେ ଅବସ୍ଥା କରିଥିଲା ସବୁ କଥା ସେ ସାରୀଟି ଶୁଆ ଆଗରେ ଖୋଲି କରି ଗୋଟି ଗୋଟି କରି କହିଗଲା । ପଛକୁ ଶୁଆ କହିଲା— ହଇଲୋ ଭଉଣୀ , ଏଥିକି କ'ଣ କିଛି ଉତ୍ତର ନାହିଁ ? ସାରୀ କହିଲା — ଆହା ଯେବେ ଏବେକ୍ଷଣି ରଜା ମହାଦେବଙ୍କ ଆଗରେ ଦାନ୍ତରେ ତୃଣ ଧରି ପାନଦଉଡ଼ି ବେକରେ ପକାଇ ପଡ଼ିଯାନ୍ତେ , ତେବେ ଏବେକ୍ଷଣି ଏହା ଗମ୍ଭୀରା ଭିତରୁ ବେଲବତୀ କନ୍ୟା ବାହାରି ପଡ଼ନ୍ତେ । ମାଳୀ ସାରୀ ଶୁଆରୁ ସବୁ କଥାକ ଶୁଣି ଅଣ୍ଟାରୁ ଖଡ଼ିଗୋଟାଏ କାଢ଼ି ଦେଉଳ କାନ୍ଥରେ ଲେଖି ପକାଉଥାଏ , ମାଳୀ ସବୁ କଥାକ କାନ୍ଥରେ ଲେଖୁ ଲେଖୁ ଅନେକ ଡେରିରେ ହୋଇଗଲା , ରଜା ପାଦୁକ ପାଇବେ ବୋଲି ଠାଆକୁ ଭଜେ ନ କରି ମାଳୀକୁ ଚାହିଁ ବସିଥାଆନ୍ତି । ମାଳୀ ଥରହର ହୋଇ ରଜାଙ୍କ ଛାମୁରେ· ଯାଇ ଜଣାଇଲା , ମହିମା ! ମୁଣ୍ଡ ରହିଲେ ତୁଣ୍ଡ କହିବ।

ରଜା କହିଲେ, କଅଣ କହୁ ନାହୁଁରେ ମାଳି ! ମାଳୀ କହିଲା, ମହିମା ! ଟିକିଏ ୪ ମହାଦେବଙ୍କ ଦେଉଳକୁ ବିଜେ କରନ୍ତୁ ଆଜ୍ଞା ହୁଅନ୍ତୁ । ରଜା ସେହିକ୍ଷଣି ମାଳୀ ସାଙ୍ଗେ ସାଙ୍ଗେ ନଅର ଘର ଚତୁରଙ୍ଗ ବଳ ଧରି ଦେଉଳକୁ ଗଲେ । ମାଳୀ ଯୋଡେ ଯୋଡେ କଥା କାନ୍ଥରେ ଲେଖିଥିଲା, ରଜାଙ୍କୁ ତା ସବୁ ଦେଖାଇ ଦେଲା । ରଜା ପାଳଦହିଡ଼ି ବେକରେ ପକାଇ ସେ ମହାଦେବଙ୍କ ଆଗରେ ଲଟକିକି ପଡ଼ିଗଲାକ୍ଷଣି ବେଲବତୀ କନ୍ୟା ଗମ୍ଭୀରା ଭିତରୁ ଦିବ୍ୟ ସୁନ୍ଦର ରୂପ ଧରି ପାଟପୀତାମ୍ବରୀ ପରିହାଣ ହୋଇ ଗୋଡ଼ଠୁଁ ମୁଣ୍ଡ ପର୍ଯ୍ୟନ୍ତେ, ଅଳଙ୍କାର ଭରି ହୋଇ ରୁଣୁଝୁଣୁ ହୋଇ ବାହାରି ପଡ଼ିଲେ, ରଜା ମହାଆନନ୍ଦ ହୋଇ ବେଲବତୀ କନ୍ୟାଙ୍କୁ ସାଙ୍ଗରେ ଘେନି ନଅରକୁ ଗଲେ । ରାଇଜଯାକ ଧନ୍ୟ ଧନ୍ୟ ହୁରି ପଡ଼ିଗଲା । କୁଣ୍ଡୁଭୁଣ୍ଡୁଣୀଙ୍କୁ ଶୂଳି ଦେଲେ, ରଜାପୁଅ ସଙ୍ଗେ ବେଲବତୀ କନ୍ୟାକୁ ବିଭା କରାଇ ଦେଲେ । ନୂଆରାଣୀଙ୍କୁ ଘେନି ରଜାପୁଅ ଘର ଦୁଆର କଲେ । କେତେ ଲୋକଙ୍କୁ କେତେ କଥା ବାଣ୍ଟିଲେ । ମୁଁ ତାଙ୍କ ଦୁଆରକୁ ଗଲି ଯେ, ମତେ କଥା କହିଲେ ନାହିଁ । ମୋ କଥାଟି ଏତିକି, ଫୁଲ ଫୁଟେ ଜେଙ୍କୋ ।

# ମୋ ଝିଅ ଲଙ୍କା ଜିତିଲା

କୁଞ୍ଜବିହାରୀ ଦାଶ

ଦନ୍ତାଧୂଳି ବୋଲି ଗୋଟିଏ ରାଜ୍ୟରେ ହେମନ୍ତ ବୋଲି ଜଣେ ରାଜା ଥିଲେ । ତାଙ୍କ ରାଣୀଙ୍କ ନାଆଁ ଭୁବନୀଳା । ରଜାଙ୍କ ମନ କାହିଁକି କେଜାଣି ସଂସାରରେ ଲାଗିଲା ନାହିଁ । ସେ ବଇରାଗୀ ହେଲେ, ଦିନରାତି ଈଶ୍ୱରନାଥଙ୍କୁ ଧ୍ୟାନ କଲେ । ଏଣେ ରାଜ୍ୟ ଛିନଛତ୍ର ହୋଇଗଲା । ମେଘନାଦ ପାଚେରୀ ଭାଙ୍ଗି ପଡ଼ିଲା । ନଅରରୁ ସବୁ ଜଙ୍ଗଲ ମାଡ଼ି ବସିଲା । ପୋଇଲୀ ପରିବାରୀ ଯେ ଯୁଆଡ଼େ ନଅର ଛାଡ଼ି ପଳାଇଲେ ।

କେତେ ବର୍ଷ ପରେ ରଜାଙ୍କ ଧ୍ୟାନ ଭାଙ୍ଗିଲା । ସେ ଫେରି ଦେଖିଲେ ଯେ ନଅର ଭିତରେ ଶଙ୍ଖଚୂଡ଼ ସାପ ଖେଳୁଛନ୍ତି, ରାଣ୍ଡୀ ଖୋଖରୀ କି ଓଧାଳ ଦଳ ମାଡ଼ି ବସିଛନ୍ତି । ଅରମା ଜଙ୍ଗଲ ଭିତରେ ଉଆସ ଫାଟି ଆଁ କରିଛି । ତା ଭିତରେ ଶିଆଳି ଲତାର ବଡ଼ ଏ ପଟେ ଫୁଟି ସେ ପଟେ ବାହାରିଛି । ରାଣୀ ଭୁବନୀଳା ଏ ସବୁ ଭାବି ଚିନ୍ତାରେ ସୁତାଖିଅ ପରି ହେଲେଣି । ପ୍ରଜାପାଳନ କରିବା ତ ଦୂରର କଥା, ଦୁଆର ମାଡ଼ୁ ନାହାନ୍ତି । ଦେଖି ରଜାଙ୍କ ମନ କଷ୍ଟ ହୋଇଗଲା । ସେ ନାରଦ ମାମୁଁଙ୍କୁ ସ୍ମରଣା କଲେ ।

ନାରଦଙ୍କ ଆସନ ଟଳମଳ ହେଲା । ଅଣ୍ଟା ସଳଖି ଆଖି ବୁଜି ଘଡ଼ିଏ ଧ୍ୟାନରେ ବସି ସେ ଜାଣିଲେ ଯେ ହେମନ୍ତ ରଜା ତାଙ୍କୁ ସ୍ମରଣା କରୁଛି । ସଙ୍ଗେ ସଙ୍ଗେ ଢିଙ୍କି ବାହନରେ ଚଢ଼ି ସେ ଦନ୍ତାଧୂଳିରେ ପହଞ୍ଚିଲେ । ହେମନ୍ତ ରଜା ତାଙ୍କୁ ବହୁତ ମାନ୍ୟ କଲେ । ହଳଦୀ ପାଣିରେ ଗୋଡ଼ ଧୁଆଇଲେ ଓ ଫୁଲ ଚନ୍ଦନ ଦେଲେ । ରତ୍ନ ସିଂହାସନରେ ବସାଇ କୁଶଳ ପଚାରିଲେ ।

ନାରଦ ପଚାରିଲେ — ରଜା, କି ହେତୁରୁ ମତେ ସ୍ମରଣା କଲ ? ରଜା କହିଲେ — ମାମୁଁ ମୋ ଅବସ୍ଥା ଦେଖୁଚ ଟିକି ? ବଣକୁ ତପସ୍ୟା କରି ଯାଇଥିଲି । ଏବେ ଫେରି

ଦେଖୁଛି - ମୋ ଘର ବଣ ହୋଇ ଯାଉଛି । ସାରଦ ସାରଣ ଯୋଗାଳିଆ, ଯେତେ କୁଶ୍ଚିଆଙ୍କୁ ଜଡ଼ିତାରକଙ୍କ ହାତେ ଡକାଇ ବଣ ସଫା କରାଇଲେ । ରାଜା ପୁରୋହିତ ଓ ଆଠ ବର୍ଷିଆ ଲଡେଙ୍ଗା ବ୍ରାହ୍ମଣ ଆଣି ନଅର ପ୍ରତିଷ୍ଠା କରାଇଲେ ।

ଦିନକର ରାଜା ନଗର ବୁଲି ବାହାରିଲେ । ଚନ୍ଦ୍ରମୁଣ୍ଡା ହାତୀ ଆଗରେ ଚାଲିଲେ । ନାଚୁଆର ଟିଅ ନାଚିଲା, ଭାଟର ଶୁଆ ଗୀତ ଗାଇଲା । ହୁମୁରୀ ଭିଡ଼ରେ ଖବର ଖାଡ଼ିରେ ଡାକ ପଡ଼ିଲା । ଝୁଡ଼ର କଇଁଆ ଭିତରେ ହାତୀପାନ୍ତ ପାଲିଙ୍କିରେ ରଜା ବିଜେ ହେଉଥିବା ବେଳେ ଝରକାରେ ଧୋବଣୀ ମାହାଳ ଲୁଗା ଗଣ୍ଡିର ଢୋକ ଆସୁଥିଲା, ଦୁଆରେ ଛିଡ଼ା ହୋଇଥିବା ଜଣେ ଟିରିଲାକୁ ଫୁସ୍ ଫୁସ୍ କରି କହିଲା — ମଲା, ମଲା, ସକାଳୁ ଏ ଅଲକ୍ଷଣା ମୁହଁ କାହିଁକି ଚାହିଁଲି ? ଆଜି ଦିନଯାକ କଣ ଘଟିବ କିଏ ଜାଣେ ?

ଟିରିଲାଟି କହିଲା - ଏଡ଼େ କଥାଟାଏ ରଟ୍ କଲୁ କାହିଁ ଦେଉଚୁ କେମିତି ? ଠିକଟେ ଜାଣେ ଆମ ରଜା ବିଜେ କରିଛନ୍ତି ଦେଖିବାକୁ ଠିକଟେ ରଙ୍କ ପରି ଲାଗୁଛି !

ଧୋବଣୀ କହିଲା — ଆରେ, ମୁଁ କଣ ମିଛ କହୁଛି ? ଏ ଅମଙ୍ଗଳା ମୁହଁ ଚାହିଁଲେ କୋଉ କଥାରେ ଦମ୍ଭ ନାହିଁ । ଏ ରଜାଟା ତୋ ଆଣ୍ଠୁକୁଡ଼ା ।

ରଜାଙ୍କ କାନରେ ଯେମିତି ଏ କଥା ବାଜିଛି, ତାଙ୍କ ମନ କଣ ହୋଇଗଲା । ସେ ଥାଟପାଟୁଆର ଫେରେଇବାକୁ ଆଦେଶ ଦେଲେ, ମନେ ମନେ ସ୍ଥିର କଲେ — ପିଲା ନ ହେବା ପର୍ଯ୍ୟନ୍ତ ମୁଁ ଆଉ ରାଜ୍ୟରେ ମୁହଁ ଦେଖାଇବି ନାହିଁ ।

ସେଥିକୁ ସାତ ଦିନେ ରାତିରେ ରାଜପୋଷାକ ଛାଡ଼ି ବେଶ ବଦଳି ଜଡ଼ପୁଞ୍ଜି ମାରି ବାହାରି ପଡ଼ିଲେ । ରାତିଯାକ ବୁଲି ବୁଲି ଟେକାକୁ ଈଶ୍ୱରନାଥଙ୍କ ଘାଟରେ ତପସ୍ୟାରେ ବସିଲେ, ଅନ୍ନପାଣି ଛୁଇଁଲେ ନାହିଁ ।

ସେଇଠେ ଜାଳପରେ ଈଶ୍ୱରନାଥଙ୍କ ଆସନ ଟଳିଲା । ସେ ଦେଖା ଦେଇ କହିଲେ – କି ବର ମାଗୁଛ ମାଗ । ରଜା କହିଲେ —ମତେ ପୁଅଟିଏ ଦିଅ । ଈଶ୍ୱରନାଥ ସତ୍ୟ ଆମ୍ବଟିଏ ଦେଇ ଅନ୍ତର୍ଧ୍ୟାନ ହୋଇଗଲେ ।

ରାଣୀ ସେ ଫଳରୁ ଅଧେ ଖାଇଲେ । ବାରରୁଗି ବାରରୁଗିଆଣୀଙ୍କ ନିକଟକୁ ଅଧେ ପଠାଇଦେଲେ । ତାଙ୍କର ବି ପିଲାଟିଏ ନ ଥିଲା ।

ଆମ୍ବ ଖାଇ ରାଣୀଙ୍କର ମାସ ଗଡ଼ିଲା, ଦଶମାସ ଦଶ ଦିନରେ ପୁଅଟିଏ ହେଲା । ଶଙ୍ଖ ମହୁରୀ ବାଜିଲା, ହୁଳହୁଳି ପଡ଼ିଲା । ରଜାଙ୍କର ପୁଅ ହୋଇଛି ବୋଲି ଗାଁରିଆରେ ମଉଚ୍ଛବ ଲାଗିଗଲା । ପାଞ୍ଚଦିନେ ପଞ୍ଚୁଆତି, ଛଦିନେ ଷଠିଆରି, ନ' ଦିନେ ନରତା, ଏକୋଇଶି ଦିନରେ ଏକୋଇଶା ହେଲା– ନାଆଁ ଦିଆହେଲା ଲଳିତ ।

ସେପଟେ ଆମ୍ବଖାଇ ବାରରୁଗିଆଣୀଙ୍କର ଝିଅଟିଏ ହେଲା । ତା ନାଆଁ ଦିଆହେଲା 'କଳା ତୁଳସୀ' । ତା ରୂପ ଝଟକରେ ଘର ଆଲୁଅ ହେଲା । ଝିଅ ବଡ଼ ହେଲାରୁ ବାରରୁଗି ବର ଖୋଜି ବାହାରୁଛନ୍ତି, ଏତିକିବେଳେ ନାରଦ ପହଞ୍ଚି କହିଲେ — ତମ ଜେମାଲାଗି ବର ପନ୍ତାହୁଳିରେ ଅଛି । ଯେମିତି ରୂପର, ସେମିତି ଗୁଣର । ସେ ହେମନ୍ତ ରଜାଙ୍କ ପୁଅ — ଲଳିତ । ବାରରୁଗି କହିଲେ - ସେ ଆମ ସମାନଙ୍କ ନୁହଁନ୍ତି । ଆମେ ସେଠି ଝିଅକୁ ଦେବେହେ ଦେବୁ ନାହିଁ ।

ନାରଦ ତ କଳିଆ । ଯେମିତି ଆସି ଏଣେ ହେମନ୍ତ ରଜାଙ୍କ କାନରେ ଫୋଡ଼ି ଦେଉଛନ୍ତି, ସେ ରାଗି ନିଆଁ ବାଣ । 'ସାଜ, ସାଜ' ରଡ଼ିରେ ଚଉଦିଗ କମ୍ପିଲା । ନଗ୍ରେ ନଗ୍ରେ ଢେଣ୍ଡରା ଦିଆହେଲା — ଗଙ୍ଗା- ଜଳ ରାଜ୍ୟ ସଙ୍ଗେ ବାଦ ଭିଆଇବି । ଅସ୍ତ୍ର ଶସ୍ତ୍ର ଘେନି ବାହାରି ଆସ ।

ରାଜାଙ୍କ ଆଜ୍ଞାରେ ପାଇକମାନେ ହାତୀରେ ବସିଲେ । ନିଜେ ରଜା ପାଲିଙ୍କିରେ ବିଜେ କଲେ । ତୁରୀ ଭେରୀ ବାଜିଲା, ବାନାବୈରେଖ ଉଡ଼ିଲା । ସୈନ୍ୟମାନେ ଗଙ୍ଗାଜଳ ରାଜ୍ୟ ଉପରେ

ଚଢ଼ଉ କଲେ । ହାତୀ ଯାଇ ଧାନବିଲ ଚକଟି ପକାଇଲେ, ତାଙ୍କ ଗୁଆ ଗଛ ନଡ଼ିଆ ଗଛ ଭାଙ୍ଗି ଦେଲେ, ଗଙ୍ଗା ଯମୁନା ଜଳ ହାଣି ଦେଲେ । ଯାହା ଦେଖି ଲୋକେ ଚମତ୍କାର ହୋଇଗଲେ । ବାର ଋଷି ବାର ଋଷିଆଣୀ କାନ୍ଧରେ ଗୋଟିଏ ଗୋଟିଏ ଥାଳ ଦଉଡ଼ି ପକେଇ ହାତରେ ଚିମୁଟା ଧରି ହେମନ୍ତ ରଜାଙ୍କ ଗୋଡ଼ ତଳେ ପଡ଼ିଗଲେ, 'କଳାହୁଲସା'ଙ୍କୁ ଦେଖି ଶରଣ ପଶିଲେ, ହାଇଁକି ରାଜ୍ୟରୁ ଅଧେ ଯାଉତୁକ ଦେଲେ । ଲଳିତ ଯାଉତୁକ ରାଜ୍ୟରେ ରଜାହୋଇ ରହିଲା । ପଣ୍ଡାହୁଲିକି ଆଉ ଫେରିଲା ନାହିଁ । ଏଥିରେ ରଜାରାଣୀ ବଡ଼ ବିମୁଖ ହେଲେ । ପୁତ୍ର ଚିନ୍ତାରେ ଅନ୍ନଜଳ ଛାଡ଼ି ଦେଲେ । ଲଳିତଙ୍କୁ ଲୋକେ ବୁଝାଇ ଥକିଲେ । କିଛି ଫଳ ହେଲା ନାହିଁ ।

ସ୍ୱର୍ଗରୁ ଦେବୀ ଶିରୀ ଭୁବନଥି କାପୁଡ଼ିମାନଙ୍କୁ ମର୍ତ୍ତ୍ୟକୁ ପଠାଇ ଥାନ୍ତି । ମର୍ତ୍ତ୍ୟକୁ ଯାଅ, ଘରେ ଘରେ ବୁଲ, କିଏ ତୁମଙ୍କୁ ଜଶ କହୁଛି ଆସି ମତେ କହ । କାପୁଡ଼ିମାନେ ଭିକାରୀ ବେଶରେ ଥାଳ ଧରି ବୁଲିଲେ; ଅବିନ୍ଧା ରଜା ଦେଖି ଦୁର୍ ଦୁର୍ ମାର୍ ମାର୍ କଲେ, ତପିଆ ରଜା ଘଉଡ଼ି ଦେଲେ । କିଏ କହିଲା — ଏ କାଙ୍ଗାଳ ଗୁଡାକ ଖୋଇ ଚୋଇ ଦେବେ ନାହିଁ, ଭାରୀ ଜହାଣୀ । କିଏ କହିଲା – ଏ ଗୁଡାକ ଦିନରେ ଭିକ ମାଗନ୍ତି, ରାତିରେ ଚୋରୀ କରନ୍ତି । କିନ୍ତୁ ବାର ଋଷିଆଣୀ ଭାରି ମାନ୍ୟ କଲେ, ବହୁତ ଆଲଙ୍କାରପତ୍ର ଦେଲେ । ଏ କଥା କାପୁଡ଼ିମାନେ ଯାଇ ଦେବୀଙ୍କି କହିଲେ ।

ଦେବୀ ଦିନେ ବାର ଋଷିଙ୍କ ଯାଙ୍କି କୁଣ୍ଡରେ ଦେଖାଦେଲେ, ତା ପରେ ଋଷିଆଣୀଙ୍କ ଓକୋଳକୁ ଢେଇଁ ପଡ଼ିଲେ । ଋଷି ଋଷିଆଣୀ ଅନ୍ଧ ହୋଇଥିଲେ । ତାଙ୍କ ଆଖି ଫିଟିଲା; ଗୋଡ଼ ହାତ ତୋଡ଼ି ଯାଇଥିଲା, ଜଅଁଳିଲା ।

ଋଷି ଋଷିଆଣୀ ଦେଖିଲା ବେଳକୁ ପୁଅ ନୁହେଁ, ଝିଅଟେ । ଝିଅରେ ଆମର କାର୍ଯ୍ୟ ନାହିଁ । କେତେ ଝିଅ ହେଉଛି । ଖୋଇ ଚୋଇ ବଢେଇ ଥିବି; କିଏ ଆମ୍ଭ ଦିନେ ଛଡ଼ାଇ ନେବ । ବାପ ଭେଇ

ଅଧିଆ ରଜା ହେଲା । ହେମନ୍ତ ରାଜା ଗୋଟିଏ ହେଲା । ଯାଉଛି, ଯମ୍ଭ କୁ ପାଣିକି ଟିକିଏ ଦେବି ।

ଋଷିଆଣୀ କହିଲେ — ଅଜ୍ଞାନ ବାଳୁତ ; ସେ କି ଜାଣେ? ତାର ଦୋଷ କଣ ? ଆମର ଗୋଡ଼ ମାଡ଼ି ଯାଉଚନ୍ତି କି ? ଯଦି ଅଧୁଆ ଲାଗୁଛି କାହାକୁ ଦେଇଦିଅ । ମାରିବ କାହିଁକି ?

ଅନ୍ଧାର ରାତି, ନଅରର ଲୁହା କବାଟ ଧଡ଼୍ ଧାଡ଼୍ ଫିଟିଗଲା। ଋଷି ଋଷିଆଣୀ ଦେଖିଲେ — ହେମନ୍ତ ରାଜା ରାଣୀ ଭୁବନୀଳା ଶୋଇଛନ୍ତି, ତାଙ୍କରି କୋଳରେ ଝିଅକୁ ଦେଇ ଦୁହେଁ ଫେରି ଆସିଲେ । ଲୁହା କବାଟ ମନକୁ ମନ ବୁଜି ପଡ଼ିଗଲା ।

ଝିଅ କାନ୍ଦରେ ରଜାଙ୍କ ନିଦ ଭାଙ୍ଗିଲା । ଆଚମ୍ବିତ କଥା ; ଏ ଆଇଲା କାହୁଁ ? ଭଗବାନ ଦେବାବେଳେ ଏମିତି ଦିଅନ୍ତି। ଧାଇ ଆସି ନାହି କାଟିଲା, ଅନ୍ତୁଡ଼ି ଜାଳିଲା । ନରତା, ଏକୋଇଶା ହେଲା । ନାଆଁ ଦିଆହେଲା ସ୍ତ୍ରୀ ।

ସ୍ତ୍ରୀ ପାଠ ପଢ଼ିଲା, ଖଣ୍ଡା ବାହାବାହ ଶିଖିଲା, ସମୁଦ୍ରରେ ନାବ ବୋହିଲା, ଜଙ୍ଗଲକୁ ଶିକାର କରି ଗଲା । ଦେଖୁ ଦେଖୁ ସେ ସବୁ ବିଦ୍ୟାରେ ପାରଙ୍ଗମ ହେଲା, ଦିନେ ସେ ହେମନ୍ତ ରାଜାଙ୍କୁ କହିଲା — ବାପା ମତେ ହୀରା ନୀଳା ମୋତି ମାଣିକ ଦିଅ, ଛତ୍ର ଚକ୍ରରେଖ ଦିଅ, ଦନ୍ତାମତ ହାତୀ ଦିଅ, ଉଡ଼ଣା ବାରୁଣା ଘୋଡ଼ା ଦିଅ ମଗରମୁହାଁ ପାଲିଙ୍କି ଦିଅ, ନାଟୁଆର ଝିଅ ଦିଅ, ଭାଟର ପୁଅ ଦିଅ, ଡମ୍ଫାର ପାଲଧାର ଦିଅ, ବାରଶ କୁହାଳିଆ, ତେରଶ କୁରାଡ଼ିଆ ଦିଅ, ଦାସିଆ କେଉଟ ଦିଅ । ନାଗରା ଧୋମସା ତୂରୀ, ରଣଶିଙ୍ଗା ଦିଅ । ମୁଁ ବୋଇତରେ ବୁଲିବି, ଦରିଆ ମତେ ହାତ ଠାରି ଡାକୁଛି ।

ହେମନ୍ତ ରାଜା ସ୍ତ୍ରୀର ଦିଠି ଆଉଁସି କହିଲେ — ହଁ ତ ତୋଫାନରେ ପାଉ ଭୀତ ଅଛି, ମଗର କୁମ୍ଭୀର ଅଛନ୍ତି, ତୁ ପାରିବୁ ନାହିଁ ।

ସ୍ତ୍ରୀ କହିଲେ — ମୁଁ ତୋଫାନ ପରି ଉଡ଼ିବି, ଲହଡ଼ି

ପରି ଚଢ଼ିଇଛି; ଅଳସ ଜୀବନ ମତେ ଭଲ ଲାଗୁନି; ଲାବଣୀ ପିଠୁଳା ଚଢ଼ିବି ନାହିଁ । ତୋପାଇଁ ମୋ ମେରୁ ହାତରେ ବଳ ଭର୍ତ୍ତି କରି ଦେବ ।

ରଜା ରାଜି ହେଲେ । ସବୁ ଦରବ ବୋଇତରେ ଲଦା ହେଲା । ତାପରେ —

ଲୁଣି ବୋଇତ, ଚନ୍ଦଣି ବୋଇତ ଆଦି ଷୋଳଖଣ୍ଡ ବୋଇତ ଦରିଆରେ ଗଲିଲା । ମାଟିଆ ଦହି, ଗୋବରିଆ ଦହି, ଚନ୍ଦନିଆ ଦହି, ସିନ୍ଦୁରିଆ ଦହି, ଗହଳିଆଦହି ପାରି ହେଲା । ସୁବାଆ ବୋହିଲା, ବୋଇତ ଚାଲିଲା ।

ଶିରୀ ପଚାରିଲା — ସିଂହଳ ଦ୍ୱୀପ ଅଛି କେତେ ଦୂର? ତାପରେ ଓଡ଼ଜ ଜାଲା ତୁଳସୀଙ୍କୁ ତୁଳସୀ ପତ୍ରରେ ଓଜନ କରି ସଙ୍ଗରେ ନେଲେ । ସେଣ୍ଟ ରାଜା ସଙ୍ଗେ ସଇତ୍ର ବସିଲେ । ବାରହା ରଜା ବାପ ରଜାଙ୍କୁ ସାହାଯ୍ୟ ମାଗିଲେ । ଜାନ୍ଦୁ ଦେବୀଙ୍କ ଘାଟରେ ଜାନ୍ଦୁ ବଦଳ କଲେ । ଶିରୀଙ୍କର ନାମ ହେଲା ଝଡ଼ର ନାୟକ ।

ତାପରେ ବୋଇତ ବାହି ଯାଇ ସିଂହଳ ଦ୍ୱୀପର ରାଜାଆ କୁଦ ଘାଟରେ ଓହ୍ଲାଇଲେ । ଦନ୍ତା ମତ ହାତୀ, ଉଡ଼ଣା ଜାନ୍ଦୁଣି ଘୋଡ଼ା, ପୁତୀ ଶୃଙ୍ଗାରଣୀ, ରାଉତ କୁଅଁର ପଟୋଇ ମନ୍ତ୍ରୀମାନେ ଓହ୍ଲାଇଲେ । ତମ୍ବୁ ଘର, ପାଲଘର ତିଆରି କଲେ । ଜାଲା ତୁଳସୀ, ଝଡ଼ର ନାୟକ ଯାଇ ତମ୍ବୁ ଘରେ ରହିଲେ । ପଞ୍ଚୁଗଲା, ପହରେ ଗଲା, ଝଡ଼ର ନାୟକ ଯାଇ ତମ୍ବୁ ଘରେ ରହିଲେ ଆଜ୍ଞା ହେଲେ — ବାରଶ କୋଡ଼ାଳିଆ, ତେରଶ କୁରାଢ଼ିଆ ଡମ୍ଫେମାନେ ଯାଇ ମଧୁବନ ତୋଟା, ଗୁଆବାଡି ନଡିଆବାଡ଼ି କାଟି ଝୁଣ୍ଟି ଦିଅ; ଗଙ୍ଗା ଯମୁନା ବନ୍ଧ କାଟିଦିଅ, ଦନ୍ତାମୁଣ୍ଡ ହାତୀ, ଉଡ଼ଣା ବାରଣ ଘୋଡା, ଲବଲଜା ବାଘୁଆ ବଳଦ ଗୁଡି ଧାନ, ଝରି, ମୁଗ, ସୋରିଷ ଚରାଇ ଦିଅ ।

ସିଂହଳର ପାଣିହାରୀ ମାନେ ଆସି ଦେଖିଲେ ଯେ ଗଙ୍ଗା ଯମୁନା ବନ୍ଧ ଶୃଙ୍ଖଳା ଟାଡିଛି, ହଳବାଡି ହାତୀ ଚକଟି ପକାଇଛନ୍ତି, ତୋଟା ବାଡି ସବୁ ଝୁନ୍‌ଝାର୍‌ତ ହୋଇ ଯାଇଛି । ସେମାନେ ଯାଇ ପାଲମ୍ବୁ ରଜାଙ୍କୁ ଜଣାକଲେ — ମହାରାଜ, କୋଉ

ଦେଶର ରଜା ଘୋଡ଼ାରେ ବସି ତମ୍ବୁ ପାଖରେ ପହଞ୍ଚିଲେ । ସେଠାରେ ସୈନ୍ୟମାନଙ୍କରେ ତାଙ୍କୁ ତମ୍ବୁ ପାଖକୁ ପାଛୋଟି ନେଲେ, ତାଙ୍କ ସଙ୍ଗେ ମଉତ୍ର ବସିଲେ । ଆଜି ଏଠି ମୋ ସଙ୍ଗେ ଖନା ଖାଇବ ।

ନାୟକ ଏବେ ଯାଇ କଳାତୁଳସୀଙ୍କୁ କହିଲେ – ଆମେ ଖାଇ ବସୁଚୁ, ତୁମେ ଆମକୁ ପରଷିବ । ଥରକୁଥର ବେଶ ବଦଳାଉ ଥିବ । କୋଉଥର ପିନ୍ଧିବ କଳାମେଖୀ ପାଟ, କେଉଁଠାଦସ୍ତୁରୁ ଶାଢ଼ୀ, କୋଉ ଥର କଳାବୋଇତ, କୋଉଥର ନେତ । ଅଳଙ୍କାରରୁ କୋଉଟି କାଢ଼ି ଦେଉଥିବ, କୋଉଟି ନୂଆ ପିନ୍ଧୁଥିବ ।

ଏଠାରେ ଓ ଜଳନ୍ଧରଜା ମୁଣ୍ଡୋପିଙ୍କୁ ବସିଲେ, କଳାତୁଳସୀ ନ'ଟିଆଣ ଟୁ'ଭଜା, ଆମ୍ବିଳ ମହୁର ସାରବନ ପିଠା, ଖିରି ଖିରିସା ପରଷି ଦେଇଗଲେ । ବେଶ ବଦଳୁଥାଏ । ଚିହ୍ନି ନ ପାରି ପ୍ରତିଥର ଜଳନ୍ଧରଜା ପଚାରୁଥାନ୍ତି – ଏ ତିରିଲୁଟି କିଏ ? ଏଠାର କହୁଥାନ୍ତି – ଏଙ୍କୁ ନେପାଳ ଦେଶ ଜିଣି ଆଣିଚି । ଏଙ୍କୁ ଗଉଡ଼ ଦେଶ ଜିଣି ଆଣିଚି । ଏଙ୍କୁ ଭୁପାଳ ଦେଶ ଜିଣି ଆଣିଚି । ଏଙ୍କୁ ଲଙ୍କା ଦେଶ ଜିଣି ଆଣିଚି । ଜଳନ୍ଧ ରଜାଙ୍କ ମନରେ ଶଙ୍କା ହେଲା – ଏ କେତେ ବଡ଼ ରଜା, କେତେ ଦେଶ ଜିଣିଚି । ମୋ ଦେଶକୁ ମାଡ଼ି ନ ବସିବ କାହିଁକି ?

ମନ କଥା ମନରେ ଥାଏ, ଖାଇସାରି ଆଚମନ କଲେ ଶ୍ରୀମୁଖ ଧୌତ କଲେ, ଶାଲୁ ଗାମୁଛାରେ ହାତ ପୋଛୁଥିଲେ, ଏଠାର ନାୟକଙ୍କୁ କହିଲେ ରାତିରେ ଆଜି ଆମ ଉଆସରେ ଖନା ଖାଇବ ।

ଏବେ ଖନାଙ୍କନାନୀ ଟିକି ଟିକି କରି କହିଲେ– ରାତିରେ ବୁଝିବ, ଗୋଟାକରେ ଭଲ, ଗୋଟାକରେ ଜଗି ମିଶାଇ ରାନ୍ଧ । ଖନାନାନୀ ସେହି ପ୍ରକାରେ ରାନ୍ଧିଲେ, ସୁନ୍ଦର ଦେଲେ, ଠା'ପୀଢ଼ା କଲେ, ସୁବର୍ଣ୍ଣ ଥାଳୀରେ ଅନ୍ନ ପରଷି ଦେଲେ ।

ଏଠାର ନାୟକ ସାଙ୍ଗରେ ଜାହାଳକୁକୁର, ବାଙ୍କି ଝଲଇ, ପାଟଭଳି ଶୁଆ ନେଇ ଯାଇଥିଲେ । ସେ ପ୍ରଥମ ଭାତ

ଗୁଣ୍ଡା କୁକୁର ଆଉ ଶଙ୍ଖି ହଲେଇକି ଦେଲେ । ସେମାନେ ଭୁମଭୁ ଭୁମଭୁ ଶବ୍ଦ ପାଡିଲେ । ଶୁଣି ଯାଇ ସେ ଡାଳିମ୍ବ ରଜାକୁ କହିଲେ- ତୁମକୁ ବିଶ୍ୱାସ ନାହିଁ, ମତେ ମାରିବାକୁ ଉପାୟ ଖୋଜିଥିଲ । ତୁମେ ମୋର ଶତ୍ରୁ । ମୁଁ ତୁମ ସହିତ ଯୁଦ୍ଧ କରିବି । ଏହା କହି ଶୃଳିଆ କୂପକୁ ଗଲେ । ମଲା କୁକୁର, ମଲା ହଲେଇ ବେକରେ ଫୁଗା ବାନ୍ଧି ସମୁଦ୍ରରେ ଭସାଇ ଦେଲେ । ବାର୍ହା ରଜା, ବାଘରଜା ଭଖା ପାଡ଼ି ବେଉର୍ ପଠାଇଲେ । ସେ ଆସେ ଲୋଡା ହେଲେ ଯୁଦ୍ଧରେ ସାହାଯ୍ୟ ଦେବୁ ।

ଯୁଦ୍ଧ ପଡିଆରେ ଭୈରବ ଥାପନା କର୍ ହେଲା ; କଳା ଓଦା ବଳି ଦିଆ ହେଲା । ତାପରେ ବଳ କଷାକଷି ହେଲା । କୋଉ କାଳୁ ଗୋଟେ ସାଉଁଳିଆ ମୁଣ୍ଡି ପଥର ପଡିଥିଲା । କଥା ହେଲେ - ଯେ ଯାହାକୁ ଟେକିବ, ତାର ବଳ ବେଶୀ । ଡାଳିମ୍ବ ରଜା ତାକୁ ହଲାଇ ପାରିଲେ ନାହିଁ । ବଢ଼ର ପଥରକୁ ଟେକି ଛୁଡି କରି ଦେଲେ । ତା ପରେ ଆଉ ଝୁମ୍ବ ବାଉଁଶ, ମାଳ ଝୁମ୍ବ ବାଉଁଶରେ, ସ୍ୱରଗ ର ଲଟି ଚଢ଼ାଇ ବିନ୍ଧାରେ ଓ ଡାଳିମ୍ବ ରଜା ହାରିଗଲା । ଲୁହାର ଗାରଡିକୁ ଡାଳିମ୍ବରଜା ଖଣ୍ଡାରେ ହାଣି ପାରିଲେ ନାହିଁ ।

ତାପରେ ଗୋଟାଏ ବାରହାତ ଲମ୍ବର ଖାଇ ଖୋଳା ହେଲା । ବେଲ କାଠ, ଚନ୍ଦନ କାଠ ଜଳା ଯାଇ ରଡ଼ ନିଆଁ ଧକ ଧକ୍ ଜଳିଲା । ବଢ଼ର ନାନ୍ୟକ ହସି ହସି ତା ଉପରେ ଶୃଳିଗଲେ । ଡାଳିମ୍ବ ରଜା ଶୃଳୁ ଶୃଳୁ ପାଦରେ ଫୋଟକା ହୋଇଗଲା ।

ଶେଷକୁ ଖଣ୍ଡା ବାହାବାହି ଯୁଦ୍ଧ ହେଲା । ଦୁହେଁ ଖଣ୍ଡିଆ ଖାବରା ହେଲେ ; ବଢ଼ର ନାନ୍ୟକ ଡାଳିମ୍ବ ରଜାକୁ ଦିଗଡ଼ କରି କାଟି ପକାଇଲେ । ମୁଣ୍ଡଟା ଗଡ଼ି ଆଲଗା ହୋଇ ପଡିଲା, ଝିର୍ ଝିର୍ ରକ୍ତ ବୋହି ମାଟିରେ ଅଗ୍ୟ ଚିହ୍ନ ଗଲା ।

ଏହା ଦେଖି ବଢ଼ର ନାନ୍ୟକର ମନ କଷ୍ଟ ହୋଇଗଲା । ସେ ବୋଲେ ହେଲେ ମଇତ୍ର ; ମଇତ୍ରକୁ ମାରିବା ବଡ଼

ତୋତା । ଇନ୍ଦ୍ର ତା ରୂପକୁ ପ୍ରଶଂସା କରୁଥିଲା । କୂଟବୁଦ୍ଧିକୁ ଘୃଣା କରୁଥିଲା । ମଇତ୍ର ଲାଗି ସେ ବଡ଼ ବିକଳ ହେଲା, ମୁଣ୍ଡ ଗଣ୍ଡି ଖୋଳି ମନ୍ତ୍ର ପାଣି ଛିଞ୍ଚି ତାକୁ ବଞ୍ଚାଇଲା ।

ନିଦରୁ ଉଠିଲା ପରେ ଆଖି ମଳି ମଳି ଉଠି ଜଳନ୍ଧରକୁ କହିଲା – ଯୁଦ୍ଧ ଯାହା ହେଲା ହେଲା ଆସ ଏଥର ପଶା ଖେଳିବା । ଇନ୍ଦ୍ରକୁ ଭଲ ପଶା ଖେଳି ଆସେ ନାହିଁ । ଦେଖୁ ଦେଖୁ ସେ ହାତୀ ଘୋଡ଼ା, ସୈନ୍ୟସାମନ୍ତ, ପାତ୍ରମନ୍ତ୍ରୀ, ଛତ୍ର, ବୋଇତ, ଶେଷକୁ ତାର ଭଉଣୀ କଳାତୁଳସୀକୁ ବି ହାରିଲା, ତା ପାଖରେ ଗୋଟିଏ କାଣି କଉଡ଼ି ଟିଏ ଥିଲା । ତାର ଭାରି ମହିମା । ତା ଯୋଗୁଁ ଇନ୍ଦ୍ର ପୁଣି ସବୁ ଫେରି ପାଇଲା । ଜଳନ୍ଧର ରାଜା ରାଜ୍ୟ ହାରିଲା, ଧନସମ୍ପତ୍ତି ହାରିଲା, ଶେଷକୁ ନିଜକୁ ହାରିଲା । ଇନ୍ଦ୍ର ସୈନ୍ୟମାନଙ୍କୁ ଆଜ୍ଞା ଦେଲା – ଯାକୁ ବାନ୍ଧି ପକାଅ । ଅଣ୍ଟାରେ ଦଉଡ଼ି ଗୋଡ଼ରେ ବେଡ଼ି, ହାତରେ ଶିକୁଳି ଦେଇ ଜଳନ୍ଧରକୁ ପାଇକମାନେ ବୋଇତ ମଙ୍ଗରେ ବାନ୍ଧିଲେ । ତା'ପରେ ବୋଇତ ଛାଡ଼ି ଦେଲେ, ଦପାଙ୍କ ଉଆସକୁ ଯାଇ କଳାତୁଳସୀକୁ ଫେରାଇ ଦେଲେ ।

ଶେଷକୁ ଯାଇ ବାପାଙ୍କ ରାଜ୍ୟରେ ପହଞ୍ଚିଲେ । ଶିରୀ ସିଂହଳ ରଜାଙ୍କୁ ଯୁଦ୍ଧରେ ହରାଇ ବାନ୍ଧି ଆଣିଛି ବୋଲି ଖବର ପହଞ୍ଚିଗଲା । ରାଜ୍ୟ ଲୋକେ ବଡ଼ ସମ୍ମାନ କଲେ, ବୋଇତ ମଙ୍ଗରେ କଳାଧଳା ବୋଦା ବଳି ଦେଲେ । ରାଜ୍ୟ ସାରା ମଉଛବ ଲାଗିଗଲା ।

ଏମିତି କେତେ କାଳ ବିତିଗଲା । ଦିନେ ନାରଦ ମାମୁଁ କହିଲେ – ଶ୍ରୀ, ବହୁତ ନାଆଁ କଲୁ । ଲୋକେ ଶୁଣୁଛନ୍ତି ଧନ୍ୟ ଧନ୍ୟ କହୁଛନ୍ତି । ଏବେ କେମିତି ହାତକୁ ଦିହାତ କରିବେ ବାପାଙ୍କ ମନରେ ସେଇ ଚିନ୍ତା ।

ଶ୍ରୀ କହିଲେ – ମାମୁଁ, ସେ କଥା ଛାଡ଼, ମୁଁ ଜୀବନରେ ଜଣଙ୍କୁ ସୁଖ ପାଇଛି । ଯେତିକି ସୁଖ ପାଇଛି, ସେତିକି ଘୃଣା କରିଛି । କେବେ ହେବ ତ ସେଇଆକୁ ହେବ ।

ନାରଦ ପଚାରିଲେ - ତମେ କିଏ ? କିଏ ?

ମୁଁ ଏଇ ଜାଳନ୍ଧ ରଜା, ମୋର ଶତ୍ରୁ ବିଷ୍ଣୁ ଅନ୍ତରଙ୍ଗ ବନ୍ଧୁ । ମୁଁ ତା ଦେହଟାକୁ ବନ୍ଦୀ କରିଛି, ତମେ ମୋ ମନକୁ ବନ୍ଦୀ କରିଛ । ମୁଁ ତାକୁ ଦେବେ ହେଜ, କିନ୍ତୁ ଛୁଇଁବ ନାହିଁ ।

ଏ ଅଭିଲା କଥା କେଉଁ ଗ୍ରନ୍ଥରେ ଅଛି ? ବନ୍ଦ୍ ହେବେ, ଦୁଃଖି ଛୁଇଁବେ ନାହିଁ । ରାଣୀ ଭ୍ରବନୀନା କାନ୍ଦିଲେ, ରଜା ମନବେନ୍ତୁ କଲେ, ମାମୁଁ, ମଉସା, ପିଉସା ବୁଝେଇ, ପାଟି ଫୁଟି ଗଲେ । ପଛୁ ନ ହେଲା । ଝିଅର ସେଇ ଏକା ଜିଦ୍

ଶଙ୍ଖ, ଦେଉଳ ନାଗରା ବାଜିଲା, ହୋମ ନିଆଁ ଜଳିଲା, ହାତଗଣ୍ଠି ପଡ଼ିଲା ନାହିଁ । ସେଇ ନିଆଁକୁ ସାକ୍ଷୀ ରଖି ବୃନ୍ଦା ଜାଲନ୍ଧର ବରିଲା ।

ରଜା ହାତୀଛୁଟି, ଖଟ ପାଲଙ୍କ, କେତେ କଣ ଯଉତୁକ ଦେଲେ । ଜାଳନ୍ଧ ରଜା କିଛି ଛୁଇଁଲେ ନାହିଁ । ଶ୍ରୀ କି ସଙ୍ଗରେ ଛୋଟ ସିଂହଳ ଗଲେ । ଦେଖୁ ଦେଖୁ ସମୁଦ୍ର କୂଳରେ ପହଞ୍ଚିଲେ ।

ସମୁଦ୍ର ଗର୍ଜୁ ଥାଏ, କୂଳରେ ଲହଡି ଭାଙ୍ଗି ଚୂନା ହେଉଥାଏ । ସମୁଦ୍ର କୁ ଅନେଇ ଶ୍ରୀ କଣ ଭାବୁଥିଲେ - ମୋର ସୁରକୁ ସୃଷ୍ଟିରେ ହଟେଇଲା ସେଇଆକୁ କିଏ ହେଲି ? ମୋ ମତେ ଧନେ ବିଷ ଖାଇବାକୁ ଦେଇଥିଲା, ସେଇଆକୁ ଭଲ ପାଇଲି । ତା'ର ଉଆସରେ ରାଣୀ ହୋଇ ରହିବ ? ଚରଣଦାସୀ ହୋଇ ସେବା କରିବ ? ଧିକ୍ ମୋ ଜୀବନ ।

ଟିକିଏ ଉତାର ପାଉରିଆ ହସ ହସି ଜାଳନ୍ଧ ରଜାଙ୍କୁ କହିଲେ - ତୁମେ ଏଇ କୂଳରେ ଥାଅ କି ମୁଁ ଟିକିଏ ସମୁଦ୍ରରେ ବୁଲି ଆସେ ।

ଜାଳନ୍ଧ କହିଲେ - ଏକୁଟିଆ ଯିବ ? ମାଟି, ଭଗବାନୁଆକୁ ସଙ୍ଗରେ ନେଇ ଯାଅ । ଶ୍ରୀ କହିଲେ - ଏକୁଟିଆ ? ମୁଁ ତ ସବୁ ଦିନେ ଏକୁଟିଆ !

ଝାଁ କହି ଆହୁଲା ମାରି ସେ ଘୋର ସମୁଦ୍ର କୁ ପଶିଗଲେ । ଢେଉର ଚହଳ ନାହିଁ, କୂଳ କିନାରା କିଛି ଦିଶୁ ନାହିଁ, କେହି କୁଆଡ଼େ ନାହିଁ, ଉପରେ ନୀଳ ଆକାଶ ତଳେ ନୀଳ ସମୁଦ୍ର ।

ଶ୍ରୀ ନିଜ ଉପରେ ରାଗିଲେ, ଆଖିରୁ ନିଆଁ ଟୋପା ଖସି ପଡ଼ିଲା, ପୁଣି ଆକାଶ ଫଟାଇ ହସିଲେ, ବୁକୁ ଫଟାଇ କାନ୍ଦିଲେ, ସତେ ଯେମିତି ଲୁହରେ ତରଙ୍ଗ ନାଉଛନ୍ତି ।

ତା ପରେ ନାଆକୁ ଘିରି ଘିରି ବୁଲାଇ ସମୁଦ୍ରରେ ବୁଡ଼ାଇ ଦେଲେ ।

ଜଳମ୍ବୁ ଡାକ ପକାଇଲେ - ଶ୍ରୀ, ହୋ ଶ୍ରୀ, ଫେରି ଆସି, ଫେରି ଆସ ।

ଶ୍ରୀଙ୍କର ଆଉ ଚିହ୍ନବର୍ଣ୍ଣ ନାହିଁ ।

ମୋ କଥା ଟି ସରିଲା

- ସିଂହଭୂମ୍ -

# ମାଡ଼ହାଣ୍ଡି କଥା

ଗୋପାଳ ଚନ୍ଦ୍ର ପ୍ରହରାଜ

ଏକ ଦେଶରେ ଗୋଟିଏ ଚକୁଳିଆପଣ୍ଡା ଥାଏ, ସେଇଟି ଭାରି ଗରିବ। ସେ ମାଆଟିଏ ପୁଅଟିଏ। ପୁଅ ବଡ଼ ଭିକ ମାଗିଯାଏ, ଦୁଇ ଗାଆଁ ଗଲେ ସେରେ ଆଣେ, ନଅ ଗାଆଁ ଗଲେ ସେରେ ଆଣେ। ଇମିତିକା ଭିକ ମାଗି କରି ଯାହା ଆଣେ, ସେଥିରେ ଆପଣା ପେଟ ପୋଷେ 'ମହାପ୍ରଭୁଙ୍କ ମାୟା ତ, ଦିନେ ସେ ଚକୁଳିଆପଣ୍ଡା କେଉଁଆଡ଼େ ବୁଲିଲା ଯେ, ସେଇଟ କଥା ଦେଖିକି ଆଉ, ତାକୁ ପୋଷେ ଚାଉଳ ମୁଠା ଭିକ ମିଳିଲା ନାହିଁ। ଲୋକେ ଭିକ ଦେବେ କଅଣ? ବେଳକୁ ତାକୁ ଗାଁ ଗିଲାଖ ସବୁ ଟୋକା ବୋଲୁଅ ଲଢ଼ି ମାଡ଼ ମାରି ତଡ଼ିଦେଲେ। ପଣ୍ଡୁକୁ ଚକୁଳିଆ ପଣ୍ଡା, ବିଚାରିଟି କାନ୍ଦ ବୋବେଇ ପକେଇ ଅଇଲା' ଗୋଡ଼ ପଚ୍ଛିମଆଡ଼କୁ ଗଲା, ବିଚାରିଲା ଆଉ ଏ ନିଲଜ ମୁହଁ ଦେଖେଇବାକୁ ଘରକୁ ଯିବି ନାହିଁ। ଯା ବାମ୍ପରେ ଗୋଡ଼କୁ ମାନ କରି ଖପରାରେ ଖାଇଲା ଭଳିଆ କାନ୍ଧରେ ଝୁଲା ଯାହୁଁଳିଟିଏ ପକେଇ ଯାଉଥାଏ। ଯାଉଁ ଯାଉଁ ଖଣ୍ଡାହୁଇରେ ଦେଖିଲାବେଳକୁ ଗୋଟିଏ ଉତ୍ତମ ସୁନ୍ଦର ପଦ୍ମ ପୋଖରୀଟିଏ। ସେଥିରେ ଜଳ ଭଅରି ଭଳି ଅଥାଣ୍ଡ ପାଣି। ପୋଖରୀ ଚଉପାଖଯାକ ଝାଙ୍ଗମଳମଳ ପଥରରେ ପାହାଚ ବସିଚି। ଯାହାର ତ ସେତେବେଳେ ଭୋକଶୋଷରେ କରିଚି ନିଳୁଥାଏ। ଏ କଅଣ କରିବ? ତାକୁ ଆଉ କୁଝିବାଟ ଦିଶୁ ନ ଥାଏ। ଏ ପାଣିକି ଦେଖିଲାକ୍ଷଣି ଯା ମନରେ ଭାରି ଲୋଭ ହେଲା। ଜୀବନ ବିକଳରେ ପାଣିକୂଳ ପାହାଚ ଉପରେ ଲଥକିନା ବସିଗଲା, ଦେଖିଲା ଯେ କାଚ ଜେନ୍ତ ଭଳିଆ ପାଣି ମୁଦିକ ହୋଇଚି,

ସାତତାଳ ପାଣିରେ . ଲୁଗାପାଟିଆ ଟିକିଏ ପାକେଇ ଦେଲେ ତୁରନ୍ତକୁ ମୂର୍ତ୍ତି ଜକଜକ ଦିଶିବ । ଚକୁଳିଆପଣା ସେ ପାଣିରୁ ଚଳ ଚଳ କରି ତା ଡାହାଣ ହାତରେ ପଡୁଥାଏ, ଏଣେ ମନକୁ ବାଆଁଗେଲା ଟାଇଁ ମୁହଁରେ ମୁହଁରେ କହି ହେଉଥାଏ :- ଭାତ ଖାଉଁ, ଡାଲି ଖାଉଁ, ଦୁଧ ଖାଉଁ, ମହୁର ଖାଉଁ, ଆମ୍ବିଳ ଖାଉଁ, ଖିରି ଖାଉଁ, କାକରା ଖାଉଁ, ନାନମାନ ଖାଉଁ, ପୋଡ଼ଲ ଚକୁଳି ଖାଉଁ । ଇମିତି ଗୋଟିଏ ଦରବ ନାଆଁ ପଡୁଥାଏ, ଚଳେ ଚଳେଖାଏ ପାଣି ପିଉଥାଏ । ସେ ପୋଖରୀରେ ଗଙ୍ଗାମାତା ଥାଆନ୍ତି । ଚକୁଳିଆପଣାର ଡାକ ତାଙ୍କ କାନରେ ବାଜିଲା । ଗଙ୍ଗାମାତା ତ ଉଡ଼ିଗଲା ଚଟଚଟରେ ପେଟକଥା ଜାଣି ପାରନ୍ତି, ସେ ତ କାହା ବିକଳ ସହି ପାରନ୍ତି ନାହିଁ । ଯା ଡାକ ଶୁଣି ମନେ ମନେ ବିଚାରିଲେ, ଏ ଚକୁଳିଆପଣାଟି ସିନା ଭୋକ ବିକଳରେ ଇମିତି ହେଉଛି ! ଦେବତାଙ୍କୁ ଅବା କେଉଁ ଦରବ ଅପୂରୁବ ? ସେ କଅଣ କଲେ ନା, ଚକୁଳିଆପଣା ଯେତେକ ଦରବ ନାଆଁ ଧରି ଚଳାଏ ଚଳାଏ ପାଣି ପିଉଥାଏ, ସେତେକ ବାରଜି ବାରଜ କରି ଦନାଟି ମାନଙ୍କରେ ଭରାଭରି କରି ଗୋଟିଏ ହାଣ୍ଡିରେ ସଜାଡ଼ିଲେ, ହାଣ୍ଡି ଉପରକୁ ତେଲୁଣୀଟିଏ କଣିକାଣି କରି ଘୋଡ଼େଇ ଦେଲେ, ଏ ଚକୁଳିଆପଣାଟି ଯୋଉଁଠେଇ ବସିଥିଲା, ସେଇଠେଇଁକି ଢୁଳୀ କରି ଭସେଇ ଦେଲେ । ହାଣ୍ଡି ଭାସି ଭାସିକା ଯା ପାଖରେ ଆସି ଲାଗିଗଲା । ଚକୁଳିଆପଣା ଏ ହାଣ୍ଡିକି ଦେଖି ଭାରି ଆଚମ୍ବିତ ହେଲା, କହିଲା, ଏ ହାଣ୍ଡିଟି ଶୂନ୍ୟରୁ ଏଠେଇଁକି କୁଆଡୁ ଭାସି ଆଇଲା ? ଏଥିରେ କଅଣ ଅଛି ଦେଖେଁ । ଯା ବିଚାରି ସେ ତେଲୁଣୀଟିକି କାଢ଼ିଦେଲା ବେଳକୁ ତା ଭିତରେ ଦିବ୍ୟ ସରୁ ଘିଅ ଅନ୍ନ, ଡାଲି, ମହୁର, ଆମ୍ବିଳ,

କ୍ଷୀର, ପିଠା ଭଳିକି ଭଳି ଖଞ୍ଜା ହୋଇଛି । ସେଥିରୁ ସବୁ ବାସ୍ନା ବାହାରୁଛି । ତାହା ଦେଖି ଆନନ୍ଦରେ ତାଙ୍କ ଆଉ କହିବାର କଥା ନ ଥାଏ ! ସେ ହାଣ୍ଡିକି ପାହାଚ ଉପରକୁ ଉଠେଇ ଆଣିଲା, ତାକୁ ତ ଭାରି ଭୋକ କରୁଥାଏ ; ସେ ହାଣ୍ଡିରୁ ପଦାର୍ଥମାନ କାଢ଼ି ପେଟ ପୂରା ଖାଇଲା । ଜଣେ ମଣିଷ ତ, କେତେ ନିମିତ ଖାଇବ ? ଯେତେକ ଖାଇବାର ଖାଇଲା, ଦେଖିଲାବେଳକୁ ସେ ପଦାର୍ଥରୁ କଣେ ଖଣ୍ଡା ସରି ନ ଥାଏ, ଯେତେକ ବଳିଲା ସେତକ ଗୋଟିଖିଆଗୋଟି କରି ସେ ହାଣ୍ଡିରେ ପୂରାଇଲା, କହିଲା, ଏମାନଙ୍କୁ ମୁଁ ଘରକୁ ନେବି ଯେ ମୋ ମାଆ ଖାଇବ, ବାକୀ ଯାହା ବଳିବ ପେଟର ପୋଡ଼ା ଖାଇବ । ଖାଲି ହାତରେ କିନା ଘରକୁ ଫେରିବି ନାହିଁ ବୋଲି ଚିନ୍ତି କରି ଯାକୁ ବାହାରି ଯାଉ ଥିଲି, ବର୍ତ୍ତମାନ ଏତେକ ଜିନିଷ ହାତରେ ପଡ଼ିଲା ସିମିତ ତା' ମନ କୁଣ୍ଢେ ମୋଟ ହୋଇଗଲା । ହାଣ୍ଡିଟିକି ମୁଣ୍ଡରେ ଲମ୍ବେ ଲମ୍ବେ ଘରକୁ ମୋହିଁଲା । ଘରେ ପହଞ୍ଚିଲାବେଳକୁ ମାଆ ଯାଇଥାଏ ଗାଆଁ ଭିତରକୁ ଧନ୍ଦା କରିବାକୁ । ସେ ହାଣ୍ଡିଟିକୁ ହାଣ୍ଡିଶାଳ ଶିକା ଉପରେ ରଖିଦେଲା, ଘରେ ଖଣ୍ଡେ ମସିଣା ପାରି ଶୋଇଲା । ମାଆ ଗାଆଁରୁ ଧନ୍ଦାପଣ କରି ଯୋଗେ ଖୁବ ପାଖାପାଖିରେ ବାହି ଘରେ ଆସି ପହଞ୍ଚି ଦେଖେ ତ ପୁଅର ପେଟ ଟମାଟମ୍ ହୋଇଛି, ପୁଅ ଅଚିନ୍ତା ନିଦରେ ଘୁଙ୍ଗୁଡ଼ି ମାରୁଛି, ହାଣ୍ଡିଶାଳ କବାଟ ଫିଟେଇ ଦେଖିଲା ବେଳକୁ ଶିକା ଉପରେ ହାଣ୍ଡିଟିଏ ! ହାଣ୍ଡିଟିକି ଓହ୍ଲାଇ ପାଲ୍ଲା କାଢ଼ି ଦେଖେ ତ ହାଣ୍ଡି ଭିତରେ ଦହି ସୁବାସ ଘିଅ ଅନ୍ନ, ଚୁଅ ଡିଅଣ ନଅ ଭଜା, କ୍ଷୀର ପିଠା ଭରାଭର । ବୁଢ଼ୀ ତ ଭୋକରେ ଟହଲଟକାଳ ହଉଥିଲା, ତାକୁ ଏବେ କୋଟିନିଧି ମିଳିଗଲା । ସେ ଆଉ ପୁଅକୁ ଉଠେଇବ କଅଣ ? ବାଢ଼ିକୁ ଯାଇଁ ବେଏଁ

ଲମ୍ବର ଖଣ୍ଡେ କଦଳୀ ପତର କାଟି ଆଣିଲା, ହାଣ୍ଡିରୁ ଗୋଟି ଗୋଟି କରି ସବୁ ପଦାର୍ଥ ବାଢ଼ିଲା, ସେମାନେ ମନ ଇଚ୍ଛା କରି ଖାଇଲା, ଆଉ ଯାହା ବଳିଲା ତାକୁ ହାଣ୍ଡିରେ ପୂରେଇ ଶିକାରେ ରଖିଦେଲା। ପୁଅ ଶୋଇଥିଲା, ଉଠିଲା ମାଆକୁ ସବୁ କଥା କହିଲା। ପେଟ୍‌ର ଉପର ଓଳି ହାଣ୍ଡିରେ ଯାହା ଥିଲା ମାଆ ପୁଅ ଖାଇ ଅଠିଲ ହୋଇଗଲେ। ରାତିରେ ଶୋଇଲାବେଳେ ବୁଢ଼ୀ ପୁଅକୁ ବୁଝି ପଚେରି ଦେଲା, ଆରେ ପୁଅ, ଏବେ ଚିହ୍ନ କରି କୁଅ ଗାଁ ନଅ ଗାଁ ବୁଲିବୁ କିଆଁ? କାଲି ସକାଳୁ ପେଟ୍ ଯାଇ ପୋଖରୀକୂଳରେ ବସ, ଦେଖିବା ଦେଖି କଅଣ ହଉଚି? ମାଆ ପୁଅ ସ୍ଥା ବିଚରା ବିଚରି ହୋଇ ଶୋଇଲେ। ସକାଳୁ ଚକୁଳିଆ ପଣ୍ଡା ତ' କାଲିର ସୁଆଦ ପାଇଚି, ନାଁ ସକାଳୁ ଉଠି ଆଇଁଚି। ବଢ଼ି ଝଟପଟିରୁ ଉଠି, ପାପୋଇ, ଚିତା ଚଇତନ କାଟି ସିଆଁଏ ସିଆଁଏ ଯାଇ ଏକଦମ୍ ପଦ୍ମ ପୋଖରୀ କୂଳରେ ହାଜର। ପେଟ୍ କାଲି ଯିମିତି ଭାତ ଖାଇଁ, ଡାଲି ଖାଇଁ, ତିଅଣ ଖାଇଁ, କରୁଥିଲା ଆଜି ସିମିତି ଟଳ ଟଳ କରି ପାଣି ପିଉଥାଏ, ଏଣେ ସିମିତି କହୁଥାଏ। ସତକୁ ସତ, କାଲି ପରିକା ହାଣ୍ଡିଟିଏ ଭାସି ଆସି ତା ପାଖରେ ଲାଗିଲା, ସେ ଆପେ ଯାହା ଖାଇବାର ଖାଇଲା, ବାକୀ ଯାହା ବଳିଲା, ସେତକ ଘରକୁ ଆଣି ଶିକା ଉପରେ ରଖିଦେଲା। ମାଆ ଗାଆଁରୁ ବୁଲିବାଲି ଆସି ଖାଇଲା। ପେଟ୍ ରାତିକି ମାଆ ପୁଅ ଦହେଁ ପୋଲେ ଲେଖାଏଁ ମାଇଲେ। ଏମିତି ବହୁତ ଦିଅ ହାଣ୍ଡିଟିମାନ ଆସେ, ମାଆ ପୁଅ ଦହେଁ ସେତକ ଖାଇ ପିଇ ମଇଁଷି ହାଙ୍କୁଟି ମାରି ଗଡ଼ଗଡ଼ଉ ଥାଆନ୍ତି। ପୁଅ ତ ଦେଖିଲା ଯେ ବହୁ ପୋଂକଟରେ ତାକୁ ଦିବ୍ୟ ସୁନ୍ଦର ଜୋଇଂଭୋଜନ ମିଳିଲା, ମାଆ ଦେଖିଲା ଯେ, ବସିଲାଠେଇଁ ତ ତାକୁ ଆହାର ମିଳିଲା। ପୁଅ

ଆଉ ଭିକ ବି ମାଗି ଗଲାନାହିଁ, ମାଆ ବି ଦୁଃଖ ଧନ୍ଦା କରିବାକୁ ଗଲା ନାହିଁ, କି କୁଟା ଖଣ୍ଡକ ଦିଖଣ୍ଡ କଲା ନାହିଁ। ଇମିତି ମାଆ ପୁଅଙ୍କ ମୁହଁ ତ ମାଗଣା ଭାତରେ ଲାଗିଯାଇଥାଏ। ଏଣେ ଗଙ୍ଗାମାତା ବିଚାର କଲେ ଯେ, ଏ ମାଆ ପୁଅ ତ ନିକର୍ମା ହୋଇ ବସିଲେ, କିଛି କାମ କଲେ ନାହିଁ, ଯାଙ୍କ ଦେଖାଦେଖି ସଂସାରଲୋକ ସମସ୍ତେ, ତ କର୍ମଚୋରିଆ ହୋଇଯିବେ ଆଉ ଦୁଃଖୀ ଅନାଥକୁ ତ କେହି ଆଦରିବେ ନାହିଁ, ଯାଙ୍କ ମୁହଁ ନ ଭାଙ୍ଗି ଦେଲେ ହବନାହିଁ। ଏଇଥା ପାଇଁ ଗଙ୍ଗାମାତା କୁଟିଏ ଭେଳିଲା ଦିନକର କଥା ହୋଇଛି ନା, ଟିକିଲିଆପଣା, ବଡ ଯିମିତି ଯାଏ, ସେ ଦିନ ବଡି ସକାଳୁ ଉଠି ସ୍ନାହାନ ପ୍ରକାର କରି ସେ ପାନ୍ଧି ପୋଖରୀକି ଗଲା, ପାହାଚରେ ବସି ଯିମିତି ଜପ କରେ, ସିମିତି ସେଦିନ କଲା। ପାଣି ଟଳେ ଟଳେ ଦିଉଥାଏ, ଏଣେ ମିଚୁରେ ମିଚୁରେ କହି ହେଉଥାଏ, ଭାତ ଖାଉଁ, ହାଗୁ ଖାଉଁ, ତିଅଣ ଖାଉଁ, ସାକର ଖାଉଁ, ଖେଚେଡି ଖାଉଁ, ଇଣ୍ଡୁରି ଖାଉଁ ଇମିତି କହୁଥାଏ। ମନେ ମନେ ବିଚାର କରୁଥାଏ, ଜଡ ଯିମିତି ହାଣ୍ଡିଟିଏ ଭାସି ଆସେ, ସିମିତି ଭାସି ଆସି ଆଜ ମୋ ପାଖରେ ଲାଗିଯିବ ଯେ, ମୁଁ ସୁନାପୁଅ ଭଳିଆ ତାକୁ ନେଇ ମାଆ ପୁଅ ଦିହେଁ ଖାଇ ହେଣ୍ଡି ମାରି ବୁଲୁଥିବୁ। ଗଙ୍ଗାମାତା ବିଚାରିଲେ ଦେଖ, ଯାର କେଡେ କଥା। ମୁଁ ଯା ବିକଳ ସହି ନ ପାରି ଯାକୁ ଖାଇବାକୁ ଦେଲି ବୋଲି ମାଆ ପୁଅ ଦିହେଁ ଇଲ୍ଟିଲ୍ ମାନିବାକୁ ନାହାନ୍ତି। ଦିହିଙ୍କି ଦିହେଁ ଗର୍ବିଟିମାନ ବାହାରି କରି ବୁଲୁଛନ୍ତି। ଆଜି ପୁଜାଟାଏ ଆଡ୍ଡା କରି ନ ଦେଲେ ଇମାନେ ଚେତିବେ ନାହିଁ। ଗଙ୍ଗାମାତା ତ ସହଜେ ଦେବତା, ତାଙ୍କୁ ଅବା କୋଉ କଥା ଉଣା ଅଛି? ଯା ବିଚାରି ରାଗ ଦମ ଦମ ହୋଇ ହାଣ୍ଡିଟି ଭିତରେ ଗୁହଏ ବିଠା, ଟିପୁଡା, କଦୁଣୀ,

ଘୋଇଠା, ଚିମୁଟା ଲେଞ୍ଜ, ଗ୍ରାମୁଡ଼ା, କାମୁଡ଼ା ଇମିତି ଘୋଡ଼େକେ ମାଡ଼ ଏ ସଂସାରରେ ଅଛି, ସବୁ ପୁରେଇଲେ । ହାଣ୍ଡି ଉପରେ ତେଲୁଣୀଟି କଣ୍ଟିକାଣ୍ଟି କରି ଜିଭକୁ କରି ଘୋଡ଼େଇ ଦେଲେ, ଏ ଚିକ୍କଣିଆପଣା ପାଖକୁ ଉଠେଇ ଦେଲେ । ହାଣ୍ଡିଟି ଭାସିଭାସିକା ଆସି ଟୋକା ପାଖରେ ଲାଗିଲା । ଟୋକା ତ ମନେ ମନେ ଆଗରୁ ମିଠେଇ ଖାଇ ବସିଛି ହାଣ୍ଡିଟିକି ସୁଖକୁ ଟେକି ନେଇ ତେଲୁଣୀଟିକି କାଢ଼ିଦେଲା ବେଳକୁ ହେଲା ତ ତା ଉପରେ ମାଡ଼ ବଢ଼ି । ଚିମୁଟା ଗ୍ରାମୁଡ଼ା ଉପରେ ଗ୍ରାମୁଡ଼ା, ଜିଭ ଉପରେ ଜିଭ, ତା ଉପରେ ଘୋଇଠା, ତା ପଛକୁ ଗ୍ରାମୁଡ଼ା, କାମୁଡ଼ା, ଇମିତି ଖାଲି ତା ଅଙ୍ଗାଙ୍ଗ ଶରୀରଟାକ ଦୁମ୍‌ଦାମ୍ ଭୁଶଭାଶ୍ ଲମ୍ବି ହୋଇ ଯାଉଥାଏ । ଚିଟକଣା ଖାଇ ଗାଲକୁ ଆଉଂଶି ପକେଇଲା ବେଳକୁ ପିଠିରେ ଦୁଲୁ କରି ଗୋଟାକେ ଜିଭ ବସୁଥାଏ ! ବିହ୍ୱଳ ବିକଳ ହୋଇ ପିଠି ଆଉଂଶିଲା ବେଳକୁ ଖୁଆମୁଣ୍ଡିରେ ଦି ଘୋଇଠା ! ବେଳକୁ ବେଳ ସମୁଦ୍ର ଜୁଆର ମାଡ଼ି ଆସିଲା ଭଳିଆ ମାଡ଼ରେ କୁଆଟୁଆ ହୋଇଗଲା । ଟୋକାକୁ ସେତେବେଳକୁ ଗୋଟାଏ ବୁଦ୍ଧି ପଶିଗଲା । ଏ କ'ଣ କଲା ନା', ଚିଟପିଟ ଜୀବନବିକଳରେ ଏ ହାଣ୍ଡି ଉପରେ ତେଲୁଣୀଟାକୁ ଘୋଡ଼େଇ ପକେଇଲା । ଯିମିତି ଘୋଡ଼େଇ ପକେଇଛି, ସିମିତି କିଏ ରାଣ ଦେଲା ଭଳିଆ ଏ ମାଡ଼ବଢ଼ି ଥମିଗଲା । ଏ ଟିକେ ନିଶ୍ୱାସ ମାରିଲା । ସେତେବେଳକୁ ଟୋକା ଦେହ ହାତ ମାଡ଼ରେ ଗଡ଼ ଭଳିଆ ଫୁଲି ଗଲାଣି । ଏ ରାଗରେ ଜର୍ମମାନ ହେଉଥାଏ । କିଏ ମାଇଲା ବୋଲି ଦେଖିଛି ଟୋ, କାହା ଉପରେ ଦାଉ ସାଧିବ ? "ଶାଶୁ ମାରୁଥାଏ ବୋହୂକୁ, ବୋହୂ ଗୁରେ ହୋଇ କାହାକୁ ମାରିବ ମାରୁଥାଏ ଚୁଲିମୁହଁକୁ" ସିମିତି ଚିକ୍କଣିଆପଣା ତ ମା ଉପରେ ରାଗରେ ଜରଜର ହେଉଥାଏ, ତା ମନକଥା ମନରେ ଥାଏ, ସେ ହାଣ୍ଡିଟିକି ଉଠେଇ ଘରକୁ ପଳେଇଲା ।

ଝଡ଼ ନିମିତ୍ତ ନେଇ ଶିକା ଉପରେ ରଖିଦେଲା ଭିକ ମାଗିବାକୁ ଗଲା ବାହାରେ । ତା ମାଆ ତ ଘରେ ନ ଥାଏ । ଏବେ ତ ପୁଅ ହାଣ୍ଡି ଆଣିଲା ଦିନଠୁଁ ମାଆ ଜମାରୁ ଦୁଃଖ ଧନ୍ଦା କରିବାକୁ ନାହିଁ । ଗାଆଁସାରା ଅଗ୍ନିଦଣ୍ଡ ପାଟି ଭଳିଆ ଦାଣ୍ଡି ମାରୁଥାଏ । ଘରକୁ ଆସି ଶିକାରୁ ହାଣ୍ଡି କାଢ଼ି ଭୋଜନ ମାରୁଥାଏ । ଆଜି ଆସି ଦେଖିଲା ବେଳକୁ ପୁଅ ଘରେ ନାହିଁ, ଘର ଭିତରକୁ ପଶି ଚାହିଁଲା ବେଳକୁ ଶିକାରେ ହାଣ୍ଡିଟି ଝଡ଼ ଭଳିଆ ଥୁଆ ହୋଇଛି । ସେ ତ ମାଇପି ଲୋକ । ଏତେ ବୁଦ୍ଧିମାନ ଅବା କାହୁଁ ଜାଣିବ ? ହାଣ୍ଡିଟିକୁ ଶିକାରୁ ଧୀର କରି ଓହ୍ଲାଇ ଆଣି ନିମିତ୍ତ ଖେଳଣାଟିକୁ ସେ ହାଣ୍ଡି ମୁହଁରୁ କାଢ଼ିଛି ଆଉ ବୁଢ଼ୀ ଯାଏ କୁଆଡେ଼ । ହେଲା ତ ମାଡ଼ ଉପରେ କୁଆପଥର ହେଲା ଭଳିଆ ମାଡ଼ ! ଧଡ଼୍ ଧାଡ଼୍ ଗୋଟାକ ଉପରେ ଗୋଟେ ପାହ ପାଉଥାଏ । ଇଲୋ ବାପ ଲୋ ! ମରି ଗଲି ଲୋ, ହେଲା ବେଳକୁ ପିଠିରେ ଫେଂର୍ ଦିଇଟା ବସୁଥାଏ । ଆଲୋ ମାଆ ଲୋ, ମରିଗଲି ଲୋ ! ହେଲା ବେଳକୁ କଙ୍କାଳ ଜାହିରେ ପୁଣି ପୁଷ୍ଟାଏ ବସି ଯାଉଥାଏ । ଏଣେ ଶୂନ୍ୟ ଶବଦ ହେଉଥାଏ, କେତେ ଖାଇବୁ ଖାଆ, ଖାଆ ଖିରି ବୋଲି କହୁଥାଏ, ଖାଆ ପିଠା ବୋଲି ଗୋଇଠେ, ଖାଆ ମାଣ୍ଡୁର ବୋଲି କୁହୁଣ୍ଡା ବାଜୁଥାଏ ! ବୁଢ଼ୀ ବିକଳରେ ଦିହ ହାତ ଆଉଁଶି ପକଉଥାଏ, ଏଣେ ମାରଟା ଭଳିଆ ଚୁଟୁପଟ ହୋଇ ପଡ଼ି ଯାଉଥାଏ । ପରକୁ ବୁଢ଼ୀଙ୍କ ଗୋଟା ବୁଦ୍ଧି ଦିଶିଗଲା । ବୁଢ଼ୀ ଉଠିପଡ଼ି ସେ ପାଲମଟାକୁ ହାଣ୍ଡିଉପରେ ଉଲ୍ଟେଇ ପକେଇଲା । ହାଣ୍ଡି ଉପରେ ଢାଙ୍କୁଣୀ ପଡ଼ିଗଲାରୁ ବୁଢ଼ୀ ଉପରେ ମାଡ଼- ଅସରା ବନ୍ଦ ହୋଇଗଲା । ବୁଢ଼ୀ ଟିକିଏ ନିଶ୍ୱାସ ମାରିଲା, କହିଲା ଓହୋ ଆଜି ମଲାକୁ ଉଠି କାହା ମୁହଁ ଚାହିଁଥିଲି ? ଆଜି ପରା ଦିନେ ମାଡ଼ ଖାଇଲି । ଯା ଜଗୁରି ସେ

ହାଣ୍ଡିକି ନେଇ ତା ବାଡ଼ିଆଡ଼ ଖତକୁଡ଼ ଗଦାରେ ଲଥକିନି ରଖିଦେଲା, ବାଡ଼ କବାଟ ଜଡଦେଇ ଘରେ ଆସି ମୁହଁ ମାଡ଼ି କରି ଶୋଇଲା। ହାଣ୍ଡିଟି ଉପରେ ପାଲମ ଘୋଡ଼ିଆ ହୋଇଥାଏ। ସେଦିନ ଦଶହରାଲୋକଙ୍କୁ ରାତି ଅଧ ହେଲାଣି, ଗାଆଁଲୋକ ସମସ୍ତେ, ଖାଇ ପିଇ ନିର୍ଜନ ହୋଇ ଶୋଇଲେଣି, ପାଞ୍ଚଟା ଚୋର କୋଉ ଗାଆଁରୁ ସିନ୍ଦୁକଟାଏ ଚୋରେଇ ଆଣି ବାଣ୍ଟ କରିବେ ବୋଲି ବୁଢ଼ୀ ବାଡ଼ିଦୁଆରେ ଅଣ୍ଟି ବସିଲେ। ତାଙ୍କ ଭିତରେ ଭାଗ ବାଣ୍ଟ ଝଗଡ଼ା ଲାଗିଛି, ଏହି ସମୟରେ ଜଣେ ଚୋରର ଆଖି ଏ ହାଣ୍ଡିଟି ଉପରେ ପଡ଼ିଲା। ସେ ଭାବିଲା, ଏଥି ଭିତରେ କଅଣ ଅଛି ଦେଖିନେବି। ଏଥି ଭାବି ସେ ହାଣ୍ଡିଟିକି ଖତଗଦାରୁ ଉଠେଇ ଆଣି ସବୁ ଚୋରଙ୍କ ମଝିରେ ଥୋଇଦେଲା। ଯିମିତି ସେ ପାଲମଟିକି କାଢ଼ି ଦେଇଛି, ଆଉ ଏ ଚୋର ପାଞ୍ଚଙ୍କ ଯିବେ କୋଉ ଗାଆଁକୁ ? ହେଲା ତ ସମସ୍ତଙ୍କ ଉପରେ ମାଡ଼, ବିଛା ମାଡ଼, ଖାଲି ମାଡ଼, ଚୋର ଗୋଗୋହିବାଡ଼ିଆ ମାଡ଼, ମାଡ଼ରେ ଗୋରୁ ଚରିଗଲେ। ଏ ଚୋର ମାନେ ଆଉ ଟଙ୍କାପଇସା ବାଣ୍ଟିବେ କଅଣ ? ମାଡ଼ରେ ଜଳେଇ ବଳେଇ ହେଇ କିଏ କୁଆଡ଼େ ଛୁଟିପାଟି ହୋଇ ପଳେଇଗଲେ 'ବୋଉ ଲୋ ! ବୋଉ ଲୋ !' ହେଇ ପଳଉଥାନ୍ତି, ତାଙ୍କ ପଛେ ପଛେ ମାଡ଼ମାନେ ଗୋଡ଼େଇ ତୁଣ୍ଡା କୋଣ ପକଉଥାଆନ୍ତି। ମାଡ଼ରେ ଧୂଳି ଉଡ଼ି ଯାଉଥାଏ। ମୋଟେ ଚୋର ଗୋଟା କେତେ ପୁରୁବ ଆଡ଼କୁ ପଳେଇଲେ, ତାଙ୍କୁ ଗୁମ୍ଫାମାନେ ଗୋଡ଼େଇ ଗୋଡ଼େଇ ଗଲେ। ଯେ ପଶ୍ଚିମକୁ ପଳେଇଲେ, ତାଙ୍କ ସଙ୍ଗରେ ବିଛାମାନେ ଗୋଡ଼େଇ ଗୋଡ଼େଇକା ଗଲେ, ଯେ ଉତ୍ତରକୁ ଗଲେ ତାଙ୍କୁ ଗୋଇଠାମାନେ ଗୋଡ଼େଇଲେ ଯେ ଦକ୍ଷିଣକୁ ଗଲେ ତାଙ୍କ ସଙ୍ଗରେ ମୁଷଳମାନେ ଗଲେ। ଏମିତି ଏମିତି ବୁଢ଼ୀ ବାଡ଼ିଆଡ଼ୁ ଘାଡ଼ିକରେ ମାଡ଼ ଆଉ ଚୋରମାନେ ବି ଗଲେ, ଏଣେ ବୁଢ଼ୀ ତ ମାଡ଼

ଖାଇକରି ତା ଅଙ୍ଗାଙ୍ଗଶରୀର ପରାଣ ଡେଇଁ ଉପଡ଼ିଯାଏ, ତାକୁ ଆଉ ରାତିଯାକ ନିଦ ମାଡ଼ିବାକୁ ନାହିଁ। ସେ ଘର ଭିତରେ କଡରାଡ଼େ ଟାଙ୍ଗ ଏକଡ଼ ସେକଡ଼ ହେଉଥାଏ। ବୁଢୀ ଘର ଭିତରେ ଥାଇ ଗାଲୁଗାଡ଼ି ଏ ସବୁ ବାହାଆଡ଼ର ଚହଳଗୁଡ଼ାକ ଶୁଣୁଥାଏ। ଯିମିତି ଏ ଚୋରଗୁଡ଼ାକ ପଳେଇଲେ ବୁଢୀ ଉଠିକରି ବାଡ଼ି କବାଟକୁ ଧୁଡ଼୍କିନ ଫିଟେଇଲା, ଦେଖିଲାବେଳକୁ ତା ବାଡ଼ି ପଟାଡ଼ରେ ସିନ୍ଦୁକଟିଏ ଥୁଆ ହୋଇଛି! ବୁଢୀ ସେ ସିନ୍ଦୁକ ପାଖକୁ ଯାଇ ଥରେ କିନା ସେ ସିନ୍ଦୁକ କବାଟକୁ ଟେକୁଥାଏ, କାଳେ ହାଣ୍ଡିରୁ ମାଡ଼ ବାହାରିଲା ଭଳିଆ ସେ ସିନ୍ଦୁକରୁ ନ ପୁଣି କିଛି ବାହାରେ। ପାଟୁକୁ ଦେଖିଲା ଯେ, ସେ ସିନ୍ଦୁକ ଭିତରୁ ଆଉ କିଛି ଖୋରସାର ହେଲା ନାହିଁ। ସେଇଥିରୁ ସିନ୍ଦୁକକୁ ଖୋଲା କରି ଦେଖିଲା ବେଳକୁ ତା ଭିତରେ ହୀରା, ନୀଳା, ମୋତି, ମାଣିକ, ପାହୁଡ଼, ଅସରଫି, ଗହଣାଗାଣ୍ଠି, ଟଙ୍କାଟୋକର, ସିନ୍ଦୁକେ ଭରତି ହୋଇଛି। ଯାହା ଦେଖି ବୁଢୀର ମାଡ଼ପରନ କୁଆଡ଼େ ଉଡ଼େଇ ଗଲା। ବୁଢୀ ତ ଏକୁଟିଆ ସେ ସିନ୍ଦୁକ ଟେକି ପାରିବ ନାହିଁ। ଘରୁ ଟାଟିଆଟିଏ ଆଣି ଟାଟିଆ ଟାଟିଆ କରି ଘୁଲ୍କ ଘୁଲ୍କ କରି ନଇଁ ନଇଁ କରି ସିନ୍ଦୁକରୁ ଧନ ଦରବକୁ ରାତିକାରାତି ବୋହି ଲାଗିଲା। ରାତି ଗାଙ୍ଗୁଳୁ ଗାଙ୍ଗୁଳୁ ହେଉ, ପୁଅ ଆସି ପହଞ୍ଚିଗଲା। ମାଆ ପୁଅ ଆଉ କାଲିର ମାଡ଼ କଥା କଣ କଥାଭାଷା ହେବେ କି? ପୁଅକୁ ମାଆ ଏ ଧନ ଦଉଲତକ ଦେଖେଇଲା। ମାଆ ପୁଅ ଦିହେଁ ଟେକାଟେକି କରି ସିନ୍ଦୁକକୁ ଘର ଭିତରକୁ ଆଣିଲେ। ତହିଁ ଆରଦିନ ସକାଳୁଁ ସେ ଅସରଫିତକ ମାପିବେ ବୋଲି ବୁଢୀ ଆସି ଆମ ଘରୁ ଆମ ଚୁଅ ମେହେରଆ ଗଉଣୀଟି ମାଗି ନେଇଥିଲା ଯେ, ମୁଁ ମନେ ମନେ ଭାବିଲି, ଯାହାଙ୍କରତ ଅଇର ଖାପରା ଭଇର ନା, ସେ କଅଣ ମାପିବାକୁ ଗଉଣୀ

ତେବେଲେ ନା ? ନା ବଗୁର ବିହନ୍ତୁ ବୁଝି କାହିଁ ଆମ ଗାଉଣୀ
ପେଟରେ ଟିକିଏ ମହୁଷିଠା ମାଡି ଦେଇଥିଲୁ ତୋ , ବୁଢୀ ଆମ
ଗାଉଣୀ ପୋଖରେ ଦେଲାବେଳକୁ ଦେଖେଁ ତ ଗାଉଣୀ ପେଟରେ
ବନହଳଦୀ ଭଳି ଅସ୍ଥିର ଜଉପୁରୀ ମାଳିଟିଏ ଲାଗିଛି । ମୁଁ ତାକୁ
ନେଇ ଆମ ଗୁରୁବାର ମାଣ ବିହୁରେ ରଖିଦେଲି । ଚକୁଳି ଆପଣା
ଘରକୁ ଯାଆଁରା ଯାଆଁର ହେଇ ବୁଲବୁଲ ହୋଇକରି ଗଲା ।
ମାଆ ଝିଅ ବିହିଙ୍କି ବଟେ ମତେ ଆଉ ତାଡି ଦିଂଭେଇଲେ
ନାହିଁ । ମୁଁ ତେଣୁ ଆସି ବଣିଆକୁ ଡ଼କେଇ ସେ ମାଳିକଟା
ସୁନାରେ ଝିଅ , ଟିଅ , ନାଡି ନାତୁଣୀଙ୍କ ପାଇଁ କାନକୁ , ନାକକୁ ,
ବେକକୁ ; ମୁଣ୍ଡକୁ , ଜାତିଜାତିକା ଅଳଙ୍କାର ଗଢେଇଲି । ଘର
ଦୁଆର କରି ରହିଲି । ମୋ କଥାଟି ସରିଲା । ଫୁଲ ଗଛଟି
ମଲା ।

# ଗଜ ମୂର୍ଖ

**କୁଞ୍ଜବିହାରୀ ଦାଶ**

ମୂର୍ଖ ତ ମୂର୍ଖ — ଘୋର ଗଜମୂର୍ଖ । ଏମିତି ମୂର୍ଖ ଏ ଦୁନିଆରେ ଅଛନ୍ତି ବୋଲି ଆମ୍ଭେ କହିଲେ ବି କେହି ବିଶ୍ୱାସ କରିବେ ନାହିଁ । ବିଶ୍ୱାସ କର ବା ନ କର ସତରେ ଜଣେ ଥିଲା ! ବାପାମାଆଙ୍କର ଏକୋଇର ବଳା । ବଡ଼ ଯୋରନ୍ତରେ ବଢ଼ିଥିଲା । ଦୂର ଦୂରାନ୍ତର କଥା ଛାଡ଼, ବାଡ଼ି ଦାଣ୍ଡ ବି ଭଲ କରି ଦେଖି ନ ଥିଲା । ବାପା ମାଆ ଯେତେବେଳେ କାଳ ହୋଇଗଲେ ସବୁ ବୋଝ ଆସି ତାର ମୁଣ୍ଡରେ ପଡ଼ିଲା । ଯାହା ନ କରିବ ତା ନହେବ ; ଚଷାପୁଅ , କାମ ନ କଲେ ପେଟ ପୋଷିବ କେମିତି ? ହଳ ଯୋଚିଲା । ପଟେ ବଳଦ ମୁହଁ ଆଗକୁ , ପଟକ ମୁହଁ ପଛକୁ । ଟାଙ୍ଗିଲା ପୁଞ୍ଜାରୁ ପାଞ୍ଚଣରେ ଅଢ଼େଇ ଦେଲା । ଗୋଟେ ଆଗକୁ ଭିଡ଼ୁଛି ତ ଆଉ ଗୋଟାଏ ପଛକୁ , ବଳଦଙ୍କ ଭିତରେ ଟଣାଓଟରା ଲାଗିଲା ଯିନା , ହଳ ପାହୁଣ୍ଡେ ଆଗେଇଲା ନାହିଁ । ସୂର୍ଯ୍ୟଦେବତା ମୁଣ୍ଡ ଉପରକୁ ଉଠିଲେ । ଗମ ଗମ ହୋଇ ଝାଳ ବୋହି ପଡ଼ୁଥାଏ । ରାଗରେ ଚିଡ଼ି ଉଠି ସେ ବଳଦଙ୍କ ପିଠିରେ ପାଞ୍ଚଣ ଭାଙ୍ଗିଲା । ଭୋକରେ କରଡ଼ି ଜଳିଲାରୁ ଘରକୁ ଲେଉଟିଲା ।

ଏଣେ ଘରେ ଜାଳ ବୋଲି କାଠଟେ ନାହିଁ । ବୋହୂ ଭୁଆସୁଣୀ , ଲୋକ , କ'ଣ ଆଉ ଯିବ ? ଚୁଲିମୁଣ୍ଡେ ବସି ଗରଜୁଛି — " ସଅଁଆନାଗିଆ ଗିଳିଲାବେଳକୁ କଂସାକୁ କଂସା ଠେଲି ଦେବ , କାଠ ଯୋଗାଡ଼ କଥା ହେଲେ ବି' ଯାଦ କରନ୍ନା ।" ଭାରିଯାର ଯୋଡ଼ ଶୁଣି କୃଷାଣଟିଏ

କାନ୍ଧରେ ପକାଇ କାଠ କାଟିବାକୁ ବାହାରିଲା । ଗୋଟାଏ ବରଗଛରେ ଚଢ଼ିଲା । ଗୋଡ଼ ତଳରେ ବସିଲା ସେଇ ଡାଳକୁ ହାଣିବାକୁ ଲାଗିଲା । ସୌଭାଗ୍ୟକୁ ସେଇ ବାଟେ ବାଟୋଇଟିଏ ଯାଉଥିଲା । ମୂର୍ଖକୁ ଚାହିଁ ଦେଇ ହସଟାଏ ହସିଲା, ପାକ ଛାଡ଼ିଲା — "ଆରେ ଆରେ, ଏହିଙ୍କ ଓଲୁ ? ତଳ ପଡ଼ିବେ ପଡ଼ି ମରିବୁରେ ।" ଏ କଥା ଶୁଣି ମୂର୍ଖ ଏକେବାରେ ଚାଟଙ୍କା ! ଏ ତ ସର୍ବଜାଣ ପୁରୁଷ ! ନଇଲେ ମୋ ପଡ଼ିବା ଜାଣିପାରିଲା କେମିତି ? ଓହ୍ଲେଇ ଆସି ବାଟୋଇର ଲୁଗା କାନି ଧଇଲା । "ମଉସା ! ତମେ ସର୍ବଜାଣ ପୁରୁଷ । ମତେ ଦୟା କର । ଏବେ ସତରେ କହିଯାଅ, ମୁଁ କେଉଁଦିନ ମରିବି ?"

ବାଟୋଇ ମନେ ମନେ ହସିଲା । ଭାବିଲା, ଏହିଙ୍କ ଓଲୁ ପୃଥିବୀ ହୁନି ଆରେ ଅଛନ୍ତି ? ତାର ଦୟା ହେଲା । କହିଲା, ଆରେ ବାଇଆ ! "ଜନମ ମରଣ ବିଧାତା, ତା ନ ଜାଣେ ପୁରୁଷ ।" ମୁଁ କେମିତି କହିବି ?

ହେଲେ ମୂର୍ଖ କି ଛାଡ଼ିବା ଜନ୍ତୁ ? ତା ଗୋଡ଼ ତଳେ ପଡ଼ି ହାତ ଓଠ ଧରି ନେହୁରା ହେଲା, "ମଉସା ! ତୁ କପଟ କଲେ କିଏ ମୁଁ ଛାଡ଼ିବି ? ଯେମିତି ହେଲେ ମତେ କହି ଦେଇ ଯାଅ ।" ବାଟୋଇ ତଳ ଉପରକୁ ଚାହିଁଲା, ଦେଖିଲା — କିଛି ନ କହିଲେ ଖସିବାର ଉପାୟ ନାହିଁ । କହିଲା, "ଆରେ ! ତୁ ଯେଉଁଦିନ ଯୋଡ଼ାଏ ସୂର୍ଯ୍ୟ ଦେଖିବୁ, ସେଇଦିନ ମରିବୁ ।"

ଏମିତି କେତେଦିନ ବିତିଲାଣି । ମୂର୍ଖ ସେଇ କଥା ଧାରି ହେଉଥାଏ । ଦିନରେ ଦଶଥର ଆକାଶକୁ

ଚାହେଁ – ଦେଖେ, ଗୋଟିଏ ସୂର୍ଯ୍ୟ। ଦିନକର ଖାଇସାରି ହାତ ଧୋଉଛି, ଦେଖିଲା, ପାଣି କୁଣ୍ଡରେ ସୂର୍ଯ୍ୟ ଭାସୁଛି। ଆକାଶକୁ ଚାହିଁଲା, ଆକାଶରେ ଆଉ ଗୋଟାଏ ସୂର୍ଯ୍ୟ। ମନରେ ସୁଖ ନାହିଁ। ଯାଇ ଘୋଡ଼ିଘାଡ଼ି ହୋଇ ଶୋଇଲା। ଲୋକଙ୍କ ଘରେ ଭାତହା ନାହିଁ। ବାପଘରକୁ ଯାଉଛି। ଦାଣ୍ଡ କବାଟ ବାଡ଼ି କବାଟ କିଳି ଦେଇ ଖଟରେ ମାଠ ଘୋଡ଼ି ହୋଇ ଶୋଇଛି – ହଲ ଚଲ ଶୁଣା ହଉନାହିଁ। ଖାଇବା କଥା ତା ମନରେ କିଏ? ଆଉ ଦିନ ବେଳ ପହରେ ହେଲା। ଗାଁ ଲୋକେ ଦେଖିଲେ ମୂର୍ଖ ଘର କବାଟ କିଳିକି। ହାଲୁ ହୁଲୁକି ପଡ଼ିଗଲା ଗାଆଁରେ। ଲୋକେ ଯିଏ ଡାକିଲେ ଉତ୍ତର ନାହିଁ। କବାଟ ଡାଡ଼ି ଭିତରେ ପଶିଲେ। ଦୂରରୁ ଦେଖିଲେ ଘୋଡ଼ିଘାଡ଼ି ହୋଇ ମୂର୍ଖ ଶୋଇଛି। ହଲ ଚଲ ହେଉ ନାହିଁ। "ଆହା! ମରି ଯାଇଛିରେ।" ଝାଟଙ୍ଗ ଝାଟଙ୍ଗ ଗାଁରୁ ଚାରିଜଣ ମଜଭୁତିଆ ଲୋକ ବାହାରି ପଡ଼ିଲେ। କୋକେଇ ବାନ୍ଧିଲେ। ଦେଖେ ଏ ମୂର୍ଖ ପାଣି ପିଇବନି। ସବୁ ଜାଣୁଛି। ହେଲେ ସେ ତ ମରିଛି, ମଲା ଲୋକ କ'ଣ ଉଠେ?

ମୁର୍ଦ୍ଦାରକୁ ମଶାଣିରେ ଥୋଇ ଦେଇ ତିନି ଜଣ ଗଲେ କାଠ ଆଣିବାକୁ; ଜଣେ ଜଗି ବସିଲା। ମଶାଣିରେ କୁଚ କୁଚ ମଣିଷ ହାଡ଼, ଏଣେ ତେଣେ ପଡ଼ିଛି। ମଣିଷ ମୁଣ୍ଡ। ତୁଳସୀ କୁନ୍ଦୁଆ, ଦରଜଳା କାଠ ଚାରିଆଡ଼େ ପଡ଼ିଛି। ମଶାଣିକି ଲାଗି ଗୋଟାଏ ବୋଡ଼। ଜଣେ ବିଦେଶୀ ବାଟୋଇ ସେଇ ବୋଡ଼ ପାଖେ ପହଞ୍ଚିଲା। କଥାରେ ଅଛି – ନିଜ ଗାଁ ମଶାଣି, ପର ଗାଁ ପାଣି। ପାଣି ନ ଛୁଇଁ ପଶୁଛି କେମିତି? ଚାରିଆଡ଼େ

ଗର୍ଜନ । ଖାଁ ଖାଁ ଗୋଡ଼ହାତ୍ । ନଜରରେ ପଡ଼ିଗଲା – ମଶାଣି ଭୂଇଁରେ ଜଣେ କିଏ ବସିଛି । ପଚାରିଲା " ହେ ଭାଇ ! ଏ ଜୋରରେ କେତେ ପାଣି ହବ କହି ପାରିବ ? ଲୋକଟାକୁ ଏକୁଟିଆ ବହୁ ଡର ମାଡୁଛି । ଏଣେ ଦିନ ଆସି ନିଗା ଉପରେ । ସେ ଚିହିଁ ଉଠି କହିଲା, "ମୁଁ କ'ଣ ପାଣି କଳିଛି ଯେ କହିବି ?"

ମୂର୍ଖ କାନରେ ଏତକ ବାଜିଲା । କାଲି ସେ ଏଇ ଜୋର ପାରି ହୋଇ ଯାଇଥିଲା ଆଉ ପାରି ଯାଆନ୍ତା କୁଣ୍ଡ ଆଉ ସମ୍ଭାଳି ହୁଏ କେତେବେଳେ ? କୋଳେଇ ଭିତରୁ କହି ଉଠିଲା , " ହେ ଭାଇ । କିଛି ଡର ନାଇଁ । ମୁଁ କାଲି ଜୀଇଁ ଥିଲାବେଳେ ପାରି ହୋଇଛି। ମୋଟେ ଆଣ୍ଠୁଏ ପାଣି ହେବ କି ନ ହବ । ଏଇନେ ମୁଁ ମରି ଯାଇଛି ବୋଲି ମୋ କଥା କ'ଣ ନିଚ୍ଚ ଭାବୁଚ୍ଚ ?

କିଶୁଆଳୀ ଦେଖିଲା – ମୂର୍ଖର ହାତ ଗୋଡ଼ ଥଲଥି , କଥା କହୁଛି । ଗୋଟାପଣେ ସେ ଥରିଗଲାଣି। କ'ଣ କରିବ ? ଏ ଗୁଡ଼ା ଏତେ ବେଳ ଯାଏଁ ଗଲେ କି ଆଉ ? ମୂର୍ଖର ଦିହରେ ତ ପାହାଣୀ ପ୍ରବେଶ ହେଲାଣି । ମତେ ଏଇନେ କାଇଁ । ଖାଇଯିବ । ଥରକୁ ଥର ସେ ହାତରେ ଚେପ ପକାଇଲା । ଛିଡ଼ ଦମ୍ଭ କଲା । ଭାବିଲା, ଦଉ ପଳେଇଲେ ତ ପଛରେ ଗୋଡ଼ାଇବ । ଯା ହବ ହଉ । କୁଇ ଗାଡ଼ ଖୋଳିବା ଲାଗି ମୋର କୋଦାଳ ଆଣିଥିଲା ତାକୁ ଯାକଟି ଉଠ ଲଗାଇଲା ପାହାର ଉପରେ ପାହାର । କୋଳେଇ ଭିତରୁ ମୂର୍ଖ ପକ ଚୁଟିଛି, ମାଣ୍ଡୁଛ କିଏ ? ବାହେଇ ବାହେଇ ସେ ମୁଣ୍ଡଟାକୁ ଛୁଟ କରିଦେଲା । ରକ୍ତ ନଦୀ ଭାସି ଗଲା । ଏଥର ସିଏକୁ ସତ

- ୭୨ -

ମୂର୍ଖ ମଲା । ଆଗରୁ ମନ ମରିଥିଲା, ଏବେ ଦେହ ମଲା । ମାଲଭାଇଏ ମୂର୍ଖର ଘୋଡ଼ି ଗାଧୋଇ ପାଧୋଇ ଘରକୁ ଫେରିଲେ ।

ମୋ କଥାଟି ସରିଲା ।

# 'ଅଗୋଡିଆଙ୍କୁ ବିଶ୍ୱାସ ନାହିଁ ।'

ଗୋପାଳ ଚନ୍ଦ୍ର ପ୍ରହରାଜ

ଏକ ରାଇଜରେ ଗୋଟିଏ ବ୍ରାହ୍ମଣଟିଏ ଥାଏ, ସେ ଆଣ୍ଠୁ-କୁଜା । ପୁଅ ହେବ ବୋଲି ସେ ମହାଦେବଙ୍କ ପାଖରେ ଅଭିଯୋଗ କରୁଥାଏ । ଏମିତି କେତେ ଦିନ ଅନୁସରଣ କଲା, ମହାଦେବ ତାଙ୍କୁ ଆଉ ବର ଦେଉ ନ ଥାନ୍ତି । ଦିନେ ମହାଦେବ ଉପରେ ଚଢ଼ି ବୁଲି ଯାଉଥାନ୍ତି ସିଆଡୁ ଆସିଲା ବେଳକୁ ପାର୍ବତୀ କହିଲେ ହଇଂ ହେ ! ତୁମେ ତ ଗୋଟିଏ ଅଲକ୍ଷଣା ମଣିଷଟିଏ । ତୁମ ହୃଦୟରେ ତ ଟିକିଏ ଦୟାମାୟା ନାହିଁ । ଏ ବ୍ରାହ୍ମଣଟି ଯୁଗେ ହେଲା ଏବେ କାଶୀରେ ଅନୁସରଣ କରିବ, ନିତି ଗଦା ଗଦା କରି ଗାଈଣ ବେଲପତ୍ର ଚଢ଼େଇବ, ତୁମର ଟିକିଏ ଅରମ ବିଚାରଣା ହେଉନାହିଁ ।' ମହାଦେବ ରାଗରେ କହିଲେ, 'ଆଲୋ ଆମେ ନିର୍ଲଜ୍ଜ ନୋହୁଁ, ଆମେ ଯାହାଙ୍କୁ ବର ଦେଉଁ, ତାଙ୍କୁ ଦରଦରଡୋଡ଼ କରି ଦେଉଂ, ବିଷ୍ଣୁ ସେ ନିର୍ଲଜ୍ଜ ପୁରୁଷ ।' ବିଷ୍ଣୁ ତ ବୈକୁଣ୍ଠରେ ଥାଆନ୍ତି, ତାଙ୍କ କାନରେ ଏ କଥା ଯାଇ ବାଜିଲା, ବିଷ୍ଣୁଙ୍କ ମନକଥା ମନେ ଥାଏ, ତେଣୁ ଆରଦିନ ଦିନ ଦିପହର ଆସି ହେଲାଣି, ବିଷ୍ଣୁ ବୈକୁଣ୍ଠରୁ ବାହାରିଲେ । ଆସି କଇଳାସ କନ୍ଦରେ ପହଞ୍ଚିଲା ବେଳକୁ ମହାଦେବ ବସିଛନ୍ତି ମୁଣ୍ଡୋଇରେ । ଏତେବେଳଯାଏ ପାର୍ଥିଗ୍ରାସୀ କରି ନାହାନ୍ତି । ଏତିକିବେଳେ ବିଷ୍ଣୁ ଆସି ଦାଣ୍ଡ ଦୁଆରେ ଡାକ ପକାଇଲେ । ମହାଦେବ ଏବେ କରିବେ କଣ ? ଠାଆରୁ ଉଠି ଆସିଲେ, ବିଷ୍ଣୁଙ୍କୁ ଭାରି ଯୋନାଯୋନ କରି ଘର ଭିତରକୁ ନେଲେ, ପଚାରିଲେ – ତୁମେ ଏତେବେଳେ କୁଆଡ଼େ ଆଇଲମ ? ବିଷ୍ଣୁ କହିଲେ, କେତେ ଦିନ ହେଲା ତୁମେ ଆମ ସାଙ୍ଗ ହେଇ ରାଇଜ ବୁଲି ବାହାରି ନ ଥାଉ, ଆଜି ମନ ହୋଇଗଲା ମହାଦେବଙ୍କ ସାଙ୍ଗରେ ବୁଲି ବାହାରିବା ବୋଲି । ବିଷ୍ଣୁ କାଲି କଥା କହିବେ ବୋଲି ଆସିଛନ୍ତି, ଏକଥା ତ ମହାଦେବଙ୍କୁ

ପିଟେଇ କରି କହିବେ ନାହିଁ । ମହାଦେବ ନନ୍ଦୀଙ୍କ କହିଲେ ବାସୁଆ ବଳଦ ହାତରେ ପାଲଣ ପକା । ବିଷ୍ଣୁ କହିଲେ, ଆମେ ବୃଷଭରେ ଚଢ଼ି କରି ଚାଲେ ସମସ୍ତେ ତ ହସିବେ । ଚାଲ, ବାହନ ସାଂଆନ କିଛି ନ ନେଇ ବଇରାଗୀ ବେଶ ହୋଇ ବାହାରିବା । ମହାଦେବ ହଁ ଭରିଲେ । ଦିହେଁ ଯାକ ବାହାରିଲେ । ଏଣେ ତ ସହିନେ ମହାଦେବ ପାଁଶାଶାରୁ ଛଡ଼ି ଆସି ଭୋକରେ ଆଉବାଇ ହେଉଥାନ୍ତି । ଯାଉଁ ଯାଉଁ ବାଟରେ ଏକ ଧନୀ ମହାଜନ ଘର ପଡ଼ିଲା । ସେ ମହାଜନ ମହାଦେବଙ୍କ ଭକତ । ଏ ଦିହେଁଯାକ ପହଞ୍ଚିଲା ବେଳକୁ ଅସ୍ତି ଦିନ ଗଡ଼ିଲାଣି । ହୋଉ ତ, ମହାଜନକୁ ଆଜି କହୁମାଏ ଡର ନାହିଁ, ଖାତକ ଯାକ ଆସି ପହଞ୍ଚୁଛନ୍ତି, ଦୋର୍ଦ୍ଦାରୁ ଗଣ୍ଡାକ ଆଣି ଗଦା ଗଦା କରି ଜୁଟଉଛନ୍ତି । ଏତେବେଳ ଯାଏ ମହାଜନ ବାସି ମୁହଁରେ ପାଣି ମୁନାଏ ଦେବାକୁ ତର ହେଉ ନାହିଁ । ଏ ଦିହେଁ ଯାଇ ଦୁଆରରେ ଜଗୁଆଳିଙ୍କ କହିଲେ, ଯା ମହାଜନକୁ କହି ଦେ, ଦିଜଣ ଅଭ୍ୟାଗତ ଆସିଛନ୍ତି, ତାଙ୍କ ଖବର ବୁଝ ।" ମହାଜନ ତ ଟଙ୍କା ଗଣାରେ ମାତିଛି, ଏ ଦିଜଣ ଦାଣ୍ଡ ଦୁଆରେ ବସି ରହିଲେ। ରହୁଁ ରହୁଁ ଆସି ସନ୍ଧ୍ୟା ବୁଡ଼ିବାକୁ ହେଲାଣି । ମହାଦେବ ରଗି ହୋଇ କିଆଁ ଖପରା ! ମହାଜନକୁ ଅଭିଶାପ ଦବାକୁ ଆସୁ ଉଛଇଲା ବେଳକୁ ବିଷ୍ଣୁ ମହାଦେବଙ୍କ ହାତ ଧରି ପକାଇ ତାଙ୍କୁ ବୋଧ ଶୋଧ କଲେ, କହିଲେ ' ଚାଲ ମୋର ଜଣେ ଦୁଃଖୀ ଭକତ ଅଛି, ତା ଘରକୁ ଯିବା ।

ଦିହେଁଯାକ ବାହାରିଲେ, ଯାଇ ପହଞ୍ଚିଲେ ଏକ ବ୍ରାହ୍ମଣ ଘରେ । ସେ ଭାରୀ ଦୁଃଖୀ, ଭିକ ମାଗି ପେଟ ପୋଷେ । ଘର ବୋଲି ଦି ବଖରା, ସେଥିରେ ଫେଂଟ୍ ଫାଟି ଦିଶିଣି ଲାଗିଛି । ମାଟି କୁଆଁରେ ପାଣି ପିଏ । ଘରେ ମଲାଟିଏ କଷ୍ଟ ଗୋ, ମଲାରେ ତିଅଣ ତୋରାଣି ଅନାଢ଼ କରି ଖାଏ । ପାକେଇ ଚୋଇବାକୁ

ଘୁଷୁରିଆ ଚୁଟା ଖଣ୍ଡେ, ଘୋଡ଼ ହେବାକୁ ଖଣ୍ଡେ, ସନ୍ତରା ମଶିଣା, ଘରେ ଦଟ ଲୁଗା ବୋଲି ଖଣ୍ଡିଏ ନାହିଁ । ବ୍ରାହ୍ମଣୀ ଖଣ୍ଡେ ଦରଜା ବେଟରେ ହୋଇଥାଏ । ଏ ଦିହେଁ ପହୁଞ୍ଚିଲା ବେଳକୁ ବ୍ରାହ୍ମଣ ଯାଇଚି ଭିକମାଗି ଲେଉଟି ନାହିଁ, ବ୍ରାହ୍ମଣୀ ଯାଙ୍କୁ ଦେଖିଲା ଯାଣି ଭାରୀ ଆଦର କଲା, ପାରୁଡ଼ ଖଣ୍ଡିକ ଦାଣ୍ଡପିଣ୍ଡାରେ ଆଣି ପାରି ଦେଲା, ଠେକିରେ ମୁନ୍ଦାଏ ପାଣି ଆଣି ଥୋଇ ଦେଲା, ଦିହିଁଙ୍କ ଗୋଡ଼ ଧୋଇଥାଇ ଦେଇ ଦରଜା ପଟାଟରେ ଗୋଡ଼ ପୋଛି ଦେଲା ଏ ଦିହେଁ ବସିଲେ । ଏତ ସବୁ ବିପ୍ରୁଙ୍କ କଥ—

ବ୍ରାହ୍ମଣ ମୁହିଁ ଶୁଖାଇ ତୁଚ୍ଛାକାନିରେ ଘରକୁ ଫେରିଲା ବେଳକୁ ଦେଖେ, ଦି ଜଣ ଅଭ୍ୟାଗତ ଆସିଚନ୍ତି । ବ୍ରାହ୍ମଣୀକି ତୁନି କରି ଡାକି କହିଲା, 'ତୁ ଆମ ଘରକୁ ଅଇଲା ବେଳେ ମୋର ଚାଳ ଖଣ୍ଡି, ପାରଶୁଣିଆଟି ଆଣିଥିଲୁ ସେ ଦଦରା ହୋଇ ଘର କଣରେ ପଡ଼ିଚି, ତାକୁ ଦେ, ମୁଁ ବିକି ଭାଙ୍ଗି ଅଭ୍ୟାଗତଙ୍କ ପାଇଁ ସିଧା କିଣି ଆଣେ; ଅଭ୍ୟାଗତ ଆଉ କାଣ ଆମ ଘରେ ଉପାସ ରହିବେ ? ବ୍ରାହ୍ମଣୀ ଲୁଣ୍ଠୁ ଭୁଣ୍ଠୁ କରି ସେ ଦିଖଣ୍ଡି କାଢ଼ି ଦେଲା, ବ୍ରାହ୍ମଣ ଯାଇ ମୁଦି ପାଖରେ ସେ ଦିଖଣ୍ଡି ଥୋଇ ଦେଇ ତାଙ୍କ ପାଇଁ ଚାଉଳ, ଡାଲି, ଲୁଣ ମାଲପା ପରିବାପାଚି କିଣି ଆଣିଲା । ବ୍ରାହ୍ମଣୀ ରାନ୍ଧି ବସିଲା, ରନ୍ଧାବଢ଼ା ସରିଲାଣି, ଜଣେ ସାଇପଡ଼ିଶା, ଆସି ଏ ବ୍ରାହ୍ମଣ ବ୍ରାହ୍ମଣୀଙ୍କୁ କହିଲା, ତୁମ ପୁଅଟି କୂଅରେ ପଡ଼ି ମଲାଣି । ଦିହେଁଯାକ କହିଲେ, 'ତୁନୀ ହୋ ତୁନୀ ହୋ ! ଆଉ ସତେ ପୁଅ ବଞ୍ଚିବ ଯେ ? ଏତେ ଆମେ ଭଲାଗେ ପୁଅ ପାଇଁ କୋଡ଼ି କଚାଡ଼ି ହେଲେ ଅତିଥି ଉପାସରେ ଆମ ଘରୁ ବାହୁଡ଼ି ଯିବେ ସିନା । ଅତିଥି ଆଗେ ଗଣ୍ଡାଏ ଖାଇ ସାରନ୍ତୁ, ପଛେ ପୁଅ କଥା ବୁଝାଯିବ ।' ଗେରସ୍ତ ଭାରିଯା ଦିହେଁଯାକ ତୁନୀ ହୋଇ ଅଭ୍ୟାଗତଙ୍କ ଚରଣ ବୁଝିଲେ, ଯାହା

ଶାଗ ଭାତ ତିଅଣ କରିଥିଲେ, ସବୁ ଆଣି ତାଙ୍କୁ ବାଢ଼ି ଦେଲେ, ଏ ଦିହେଁ ଖାଇ ବସିଥାନ୍ତି, ବ୍ରାହ୍ମଣୀ ତାଙ୍କ ଆଗରେ ବେକରେ ଗାମୁଛା ଘେରି ପକାଇ କରପତ୍ର ଯୋଡ଼ି ଠିଆ ହୋଇଥାଏ। ବିଷ୍ଣୁ ମହାଦେବେ ପତ୍ରରୁ ଟିକିକରେଁ ନଖକ ପର୍ଯ୍ୟନ୍ତ ସବୁ ପୋଛି ପାଛି ଖାଇଲେ। ବିଷ୍ଣୁ କହିଲେ, ଆମେ ଆଜ ଭାରି ସନ୍ତୋଷ ହେଲୁଁ। ଏ ଦିହେଁ ପତ୍ରରୁ ଉଠିଲାରୁ ବ୍ରାହ୍ମଣୀ ତାଙ୍କୁ ଆଁଚେଇବାକୁ ପାଣି ଦେଲା, ତାଙ୍କ ପାଇଁ ତା ଚିରା ପଲୁଙ୍ଗ ଖଟି ପାରିଦେଲା, ସେ ଶୋଇଲାରୁ ତାଙ୍କ ଗୋଡ଼ ଟିକିଏ ଆଉଁଷି ଦେଲା, ତାଙ୍କ ପତ୍ରରୁ ଅଧରାମୃତ ପ୍ରସାଦ ପାଇବ ବୋଲି ହାଣ୍ଡିଶାଳ ଭିତରକୁ ଯାଇ ଭାଇନାକୁ ଉଠେଇଲା ବେଳକୁ ଭାଇନା ଚୁଲି ମୁଣ୍ଡରେ ଯାକି ଯୁକି ହୋଇ ପଡ଼ିଛି, ଆଉ ଡାକ ଶୁଣିବାକୁ ନାହିଁ। ହଲେଇଲା ବେଳକୁ ଦେଖେ ବ୍ରାହ୍ମଣର ଦେହ କାଠକାଠ ପଡ଼ିଗଲାଣି, ଦେହ ହାତ କୁଆ ପଥର ପରି ଜାକର ଲାଗୁଛି। ନିଶ୍ୱାସ ବାରିଲା ବେଳକୁ ଆଉ ନିଶ୍ୱାସ ମାରିବାକୁ ନାହିଁ। ଯା ଦେଖି ଥକା ହୋଇ ଦଣ୍ଡେ ଠିଆହେଲା ପଛକୁ ପାଇଁଲା, ଆଉ ଭାଳିଲେ କଣ ହେବ। ବେଢ଼ ଉପରେ କୋଉଠା ତ ମହାପ୍ରଭୁ ଦେଲେଣି। ଅଭ୍ୟାଗତଙ୍କ ଅଇଁଠା ପତ୍ରରୁ କଣିକାଏ ପ୍ରସାଦ ନେଇ ତୁଣ୍ଡରେ ଲଗେଇ ଦେଲା, ଶୋଇଲା। ଭାଇନା ମରିବା କଥା ଘୋରସାର କଲା ନାହିଁ।

ସକାଳ ହେଲାରୁ ଅଭ୍ୟାଗତ ଦିହେଁ କହିଲେ, 'ଆଆ ରେ ବାପା! ଆମେ ଯାଉଥିଲୁଁ, ତୋର ଖୁବ୍ ବଢ଼ନ୍ତି ହଉ!' ବ୍ରାହ୍ମଣୀ କହିଲା 'ମୋ ବଢ଼ନ୍ତି ତ ମୋ ସାଙ୍ଗେ ସାଙ୍ଗେ, ମୁଁ ତ ଏବେ ଚୁଇ ପଡ଼ିଛି କାଟିଲି, ଅଉ ଘରେ ରହି କଣ ଖୁସ୍ ଖୁନ୍ଦିବି? ଚାଲ, ତୁମେ ଯାଆନ୍ତେ ମୁଁ ଯିଆନ୍ତେ।' ଯା କହି ବ୍ରାହ୍ମଣୀ ତାଙ୍କ ସାଙ୍ଗେ ସାଙ୍ଗେ ଗଲା। ଖଣ୍ଡେ ଦୂର ଯାଇଛି, ଏ ଦୁହେଁ କୁଆଡ଼େ ଉଭେଇ ଗଲାରୁ ଏ ମାନେ

ମନେ ବିଚାରିଲା, ଯାହାଙ୍କ ଆଶା ଧରିଥିଲି ମୋ, ଏତ କୁଆଡ଼େ ଗଲେ ବାହାରି, ମୁଁ ଆଉ କେଉଁ ମୁହଁରେ ଘରକୁ ଫେରିବି ? ଯାଉଛି ଯିବି, ଯାହା ମୋ କପାଳରେ ଥିବ । ଯା ବିଚାରି ବ୍ରାହ୍ମଣ ଗଲା । ଯାଉଁ ଯାଉଁ ବାଟରେ ଗୋଟିଏ ଲମ୍ବା କୂଅ ପଡ଼ିଲା । ଯାକୁ ଭାରି ଶୋଷ କରୁଥାଏ, ଯା କାନ୍ଧରେ ଗୋଟେକ ହରାକନା ଥିଲା ସବୁଯାକ ଗଣ୍ଠିରେ ସେ କୂଅରେ ପକାଇଲା । କନାରୁ କାନିଏ ଓଦା ହେଲେ ଚିପୁଡ଼ି କରି ମୁନାଏ ହେଲେ ପାଣି ପିଇବ, ତଣ୍ଟି ତ ଶୁଖି ଯାଉଛି । କନାକୁ କୂଅରେ ପକାଇ ଓଟାରିଲା ବେଳକୁ କୂଅ ଭିତରୁ କିଏ ଜାବୁଡ଼ି କରି ସେ କନାକୁ ଧରିଲା । କନା ଛଡ଼େଇବା ବେଳକୁ ଏ କାବାଭୂତ । କୂଅକୁ ଲେଙ୍ଗି ପଡ଼ି ଚାହିଁଲା ବେଳକୁ ଦେଖେ ଯେ କୂଅ ଭିତରୁ ଏକ ମହାବଳବାଘ ସେ କନାକୁ ଧରିଚି, ବାଘ ସେ କୂଅରୁ ପାର୍ଥି କଲା, ' ହେ ମହାତ୍ମା, ମତେ ଏଠୁ ଉଠା, ମୁଁ ତୋର କେବେଁ ଯେବେ ହେଲେ ଉପକାର କରିବି । ମୁଁ କେବେଁ ତତେ ଖାଇବି ନାହିଁ, ଆଜଠୁଁ ତୁ ମୋର ଧରମ ବାପ ହେଲୁ, ଏ କଥା ସତ୍ୟ, ସତ୍ୟ, ତିନ ଥର ସତ୍ୟ ।' ବ୍ରାହ୍ମଣ ମନେ ମନେ ବିଚାରିଲା ମୋର ତ ସବୁ ଆଶା ଗଲାଣି, ଜାଣି ପାରିଲି ଏ ବାଘ ଖାଇ ଯେ ଏକାବେଳକେ ପାପ ଯିବ । ଯା ମନେ ମନେ ବିଚାରି ସେ ବାଘକୁ ଉଠାଇଲା । ବାଘ ଯେମିତି ପଦାକୁ ଉଠିଲା, ସେମିତି ସାଷ୍ଟାଙ୍ଗ ହୋଇ ବ୍ରାହ୍ମଣ ଗୋଡ଼ତଳେ ପଡ଼ି କହିଲା, ତୁ ମୋ ଧରମ ବାପ ହେଲୁ, ମତେ କଣ କହୁଚୁ କହ, ମୁଁ ଆଜଠୁଁ ତୋ ଗୋଡ଼ ତଳେ ଗୋଲାମ ହୋଇ ରହିଲି । ବ୍ରାହ୍ମଣ କହିଲା, ତୁ ତୋ ସୁଖେ ତୋ ଘରକୁ ଯା ।' ବାଘ ଯାକୁ ମୁଣ୍ଡିଆଟିଏ ମାରିଲା, କହିଲା, ମୁଁ ଯାଉଚି; ହେଲେ କ'ଣ ହେବ, ତତେ ଯେବେ କିଛି ବିପତ୍ତି ପଡ଼ିବ, ତୁ ମତେ ସୁମରଣା କଲେ ମୁଁ ଯେବେ ତୋର କିଛି ହେଲେ ଉପକାର କରିବି, ନହେଲେ

ତୋତେ କେବେ ପାର ପାଇବ ନାହିଁ । ଆଉ ଶୁଣିଥା ଗୋଟିଏ କଥା 'ସମସ୍ତଙ୍କୁ ପରତେ ଯିବୁ, ବିଗୋଡ଼ିଆକୁ କେବେ ପରତେ ଯିବୁ ନାହିଁଟି ।' ଯାହା କହି ବାଘ ତ ସୁଖେ ବଣକୁ ଗଲା । ବ୍ରାହ୍ମଣ ପୋଂର୍ କୂଅରେ ହିରାକନା ଗଇଁଠେରେ ପକାଇଲା ବେଳକୁ ପୋଂର୍ ସେ କନା ଅଁକିଲା, ଏ ଚାହିଁଲା ବେଳକୁ ଏକ ସାପ କୂଅ ଭିତରୁ ସେ କନାରେ ଗୁଡ଼େଇ ହେଇଛି । ସାପ କହିଲା, 'ତୁ ମୋ ପ୍ରାଣଦାତା ହେଲୁ, ମତେ କାଢେ, ମୁଁ କେବେ ତୋ ଉପକାରରେ ଆସିବି, ତୋର ମନ୍ଦ କରିବି ନାହିଁ ।' ବ୍ରାହ୍ମଣ ସେ ସାପକୁ କୂଅରୁ ଉଠେଇଲାରୁ ସାପ ଲମ୍ବ ହୋଇ ବ୍ରାହ୍ମଣ ଗୋଡ଼ତଳେ ପଡ଼ିଲା, କହିଲା ଆଜି ଠୁଁ ମୁଁ ତୋଠେଇଁ ବନ୍ଧା ହେଲି, କ'ଣ କହୁଚୁ କହ, ମୁଁ କରିବି । ବ୍ରାହ୍ମଣ କହିଲା "ମୋର କିଛି ଲୋଡ଼ା ନାହିଁ, ତୁ ତୋ ସୁଖେ ଯାଉ ଆସିଥିଲୁ ସିଆଡ଼େ ଯା ବାହୁଡ଼ି ।" ସାପ ଯାହାକୁ ମୁଣ୍ଡିଆଟିଏ ମାରି ଗଲାବେଳେ କହିଲା, 'ମୁଁ ଯାଉଚି, ଯେବେ ତତେ କିଛି ବିପତ୍ତି ପଡ଼ିବ, ତୁ ମତେ ସୁମରିବୁ, 'ମୁଁ କିଛି ହେଲେ ତୋ ଉପକାରରେ ଆସିବି । ହେଲେ କ'ଣ ହେବ, ସମସ୍ତଙ୍କୁ ବିଶ୍ୱାସ ଅଛି, ବିଗୋଡ଼ିଆଙ୍କୁ କେବେ ବିଶ୍ୱାସ ନାହିଁଟି ।' ଯାହା କହି ସାପ ଗଲା ବାହାରି । ପୋଂର୍ ଏ କୂଅରେ କନା ବଉଡ଼ି ପକେଇଲା ବେଳକୁ ଏକ ମାଙ୍କଡ଼ କନାକୁ ଧରିଲା । ମାଙ୍କଡ଼କୁ ସିମିତ କୂଅରୁ କାଢିଲା, ମାଙ୍କଡ଼ଟାକୁ ଦଣ୍ଡବତ କରି କହିଲା, 'ମୁଁ ଦିନେ ହେଲେ ତୋ ଉପକାର ଶୁଝିବି । ଆଉ ଗୋଟିଏ କଥା ମନେ ରଖିଥା, ସମସ୍ତଙ୍କୁ ବିଶ୍ୱାସ ଅଛି ବି' ଗୋଡ଼ିଆଙ୍କୁ କଦାକାଳେ ବିଶ୍ୱାସ ନାହିଁ । ଯାହା କହି ମାଙ୍କଡ଼ ବଣକୁ ଗଲା । ବ୍ରାହ୍ମଣ ପୋଂରେ କୂଅରେ ବଉଡ଼ି ପକାଇଲା ବେଳକୁ ଏକ ବ୍ରାହ୍ମଣ ସେ କନାକୁ ଜାବୁଡ଼ି କରି ଧରିଲା । ଏ ବ୍ରାହ୍ମଣ

ଉପରେ ଆଇ କହିଲା, 'ତୁ କାହାଁକି ଅଇଚୁ ? ମୁଁ ତ ତତେ କାଟବି ନାହିଁ ! ମତେ ବାଘ, ସାପ ଆଉ ମାଙ୍କଡ଼ ଏ ତିନହେଁ ବାରମ୍ବାର ମନା କରିଛନ୍ତି, ବିଗୋଡ଼ଆଙ୍କୁ କେଭେଁ ବିଶ୍ୱାସ ନାହିଁ ବୋଲି ; ତୁ ଛୁଡ଼ି ଦେ ।' ବ୍ରାହ୍ମଣ କୂଅ ଭିତରେ ଆଇ କହିଲା, 'ତୁ କାଁଣା ବାଇ ହେଲୁ କି ? ତୁର ପଶୁଜନ୍ତୁ ସୁଭାଏ, ତାଙ୍କ ଶିକାରେ ଭୁଲି ଯାଉଚୁ ? ତୁ ମଣିଷକୁ ମୁଁ ମଣିଷ, ସେ ସୁଫଳ ତୁଚ୍ଛା ବାହାଘିଆ, ପରଘରବୁଡ଼ା, ବିରାଡ଼ି ବଇଶମ, ତାଙ୍କ କଥାରେ ତୁ ମାତଚୁ ? ସେଥିରୁ କଣ ପାଇବୁ ମ ? ତୁ ମୁଁ ଆଜି ଠେଁ ସଙ୍ଗାଂତ ହେଲେଇଁ, ଦେ, ତୁ ମତେ କାଟ, ମୁଁ ତୋ ଉପକାର ରେ ଆସିବି ନାହିଁ, ଆଉ କିଏ ଆସିବମ ?' ବ୍ରାହ୍ମଣ ବିଚାରିଲା, ହଉ, ଏ.ତ ଇମିତ କହୁଚି, ଯାହାକୁ କାଟେଁ, ଏବେ ଯାହା ତ କପାଳରେ ଥିବ ହେବ । ଯା ବିଚାରି କୂଅ ଭିତରୁ ତାକୁ ପଦାକୁ ଆଣିଲା । ପଦାକୁ ଅସିଲାରୁ ଏ କହିଲା, ତେବେ ତୁ ଦଣ୍ଡେ ଠିଆ ହେ, ମୁଁ ମୁନ୍ଦେଏ ପାଣି ପିଏଁ, ଷାଙ୍ଗ ହୋଇ ଯିବା । ସେ ବ୍ରାହ୍ମଣ କହିଲା ତୁ ଆସୁଥା ମୁଁ ତ ହେଇଟି ଆଗୋ ଆଗୋ ଯାଉଚି । ଯା କହି ସେ ବ୍ରାହ୍ମଣ ବାଟ କାଟି ଦେଇ ଗଲା । ଏ ବ୍ରାହ୍ମଣ ପୋଂର କନା ପକେଇ କୂଅରୁ ପାଣି କାଢିଲା, ତାକୁ ଛାଣି କରି ଦି ତିନ ଚଳ ପାଣି ପିଇଲା, ଦଣ୍ଡେ ଅଳସ ମୋଡ଼ୁଇଲା, ସେ କୂଅ ମୂଳରୁ ଗଲା । ଯାଉଁ ଯାଉଁ ଏକ ଅଗାନାଗି ବନସ୍ତ ପଡ଼ିଲା, ସେଠାରେ ବସିଛନ୍ତି ଯୋଡ଼ାଏ ପଟାହାରିଆ ମହାବଳ । ସେ ବିଦେଁ ଯାହାକୁ ଦେଖି ହାଓଲ ପକେଇ, ଭୁଇଁରେ ଲାଙ୍ଗୁଡ଼ ବାଡେ଼ଇ, ଗାଲ ଫୁଲୁକା ମାରୁ ଥାନ୍ତି । ତାଙ୍କ ଭିତରୁ ଏକ ବାଘ କହିଲା, 'କେତେ ଦିନକେ ଏକା ଭଲ ଶିକାରଟିଏ ହାବୁଡ଼ିଲା, ଚାଲ୍ ଭାଇ ଦେମୁଲା କାମ ବିଗିବା ।' ଆର ବାଘ କହିଲା, 'ନାହିଁ ମ, ଯାହାକୁ ମାରି କରି

ଆମ ନୂଆ ରାଜା ଆସିଛନ୍ତି, ତାଙ୍କୁ ନେଇ ଭେଟି ଦେବା । ଏହା ଶୁଣି ଏହା ଉକତ କଥାପାଣି । ପାଟୁକୁ ବନ୍ଧୁମାନେ ବଡ଼ରାଜିରେ ହେଲେ, 'ଏହାଙ୍କୁ ମାରିବା ନାହିଁ, ଏମିତି ଜୀଅନ୍ତା ନେଇ ଆମ ରଜାଙ୍କୁ ଭେଟି ଦେବା, ରଜା ସେଥିକି ଯାହା ବିଚାରଣା କରିବେ ।' ସେଥିରୁ ଏହାଙ୍କୁ କହିଲେ, 'ଆମେ ଦିହେଁ ପାଖେ ପାଖେ ଯାଉଛୁଁ, ତୁ ଆମ ମଝିରେ ଚାଲ ।' ଏ ବ୍ରାହ୍ମଣ ଆଉ କରେ କଣ, ସେତେବେଳ ସଙ୍ଗେ ଏ କାଳକାଠ ପଡ଼ିଗଲାଣି, ଏହା ଭିତରେ ଆଉ ଛୋଟାଏ ହେଇ ରକ୍ତ ନ ଥାଏ । କ'ଣ କରିବ ? ସେ ବି ବାଘଙ୍କ ମଝିଏ ମଝିଏ ଚାଲୁଥାଏ । ଯାଉଁ ଯାଉଁ ଗୋଟାଏ ମୁଣ୍ଡିଆ ଉପରେ ହଠାଏ ଉଠିଁ ଏକ ମହାବଳ ବସିଛି, ତା ପାଖରେ ଶଅ ଶଅ ନେପାଳି, କଲରାପତରିଆ, ପାହାଡ଼ିଆ ବାଘ ଯଙ୍ଗେ ଦୂରରେ ତା ମୁହଁକୁ ଚାହିଁ ବସିଛନ୍ତି । ଏ ବାଘ ଦିହେଁ ଏ ବ୍ରାହ୍ମଣକୁ ଘେନିଯାଇ ପହଞ୍ଚିଲେ । ବଡ଼ ବାଘକୁ କହିଲେ, 'ମହିମା ! ତୁମ୍ଭଙ୍କ ପାଇଁ ଆଜି ଭଲ ସାଗୁଆଟି ଆଣିଛୁଁ ।' ବାଘରଜା କହିଲା, 'ତେବେ ତାକୁ ଆଣ ଆମ ଆଗକୁ ।' ଏ ଦିହେଁ ନେଇ ବ୍ରାହ୍ମଣକୁ ବାଘରଜା ଆଗରେ ଠିଆ କରି ଦେଲାରୁ ସେ ରଜା ଏହାଙ୍କୁ ଖାଇବ କ'ଣ, ଲୁଣ୍ଠ ଭୁଣ୍ଠ ହୋଇ ମୁଣ୍ଡିଆରୁ ତଳକୁ ଓହ୍ଲାଇ ଆସି ଗୋଟାଏ ପାଳଦଉଡ଼ି ବେକରେ ପକାଇ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲା । ଆଉ ବାଘମାନେ ଏ ରକମ ଦେଖି ଚମକୁ । ସବୁ ବାଘମାନଙ୍କୁ ବାଘରଜା ଏକାଠି ରୁଣ୍ଡ କରି କହିଲା 'ତୁମେ ମତେ କଣ ଖାଇଥାନ୍ତ ? ମୁଁ ତ ଗୋଟାଏ ଅମୁହାଁ କୂଅରେ ପଡ଼ି ମରିଥାନ୍ତି । ଏ ମୋର ପରମ ବାପ, ମତେ ସେ କୂଅ ଭିତରୁ ପଦାକୁ ଆଣିଲାରୁ ମୁଁ ଫେର୍ ମୋ ରାଇଜକୁ ଅଇଲି ।" ସବୁ ବାଘମାନେ ଅଡ଼ି ଅଡ଼ି ଦାନ୍ତରେ କୁଟା ନେଇ ବେକରେ ଗୋଟାଏ ତଲଖାଏଁ ପାଳ ଦଉଡ଼ି ପକେଇ ଏ ବ୍ରାହ୍ମଣ ଗୋଡ଼ତଳେ ପଡ଼ିଲେ । ବାଘରଜା ଏ ବ୍ରାହ୍ମଣକୁ ନେଇ ଫଂଳ ମୂଳ ପେଟେ ଖାଇବାକୁ

ଦେଲା, ଘୋଡାଓ ବନ୍ଧୁଆ ବନ୍ଧୁଆ ମହାବଳଙ୍କୁ କହିଲା — "ଯାଅ, ମୋ ଅରମାବାଗ ପାଇଁ କିଛି ଅନଦରିବ ଆଣ, ତାଙ୍କୁ ମେଲାଣି ଦେଇ ସେ ଯିବେ।' ଗୁହୁଁ ଗୁହୁଁ ଦଣ୍ଡକ ଭିତରେ ସେ ଦି ବାଘ ରଜାପୁଅ ଲକ୍ଷେ ସୁନା ଅଳଙ୍କାର ସଜେ ଆଣି ବାଘ ରଜା ଆଗରେ ଥୋଇ ଦେଲେ। ବାଘରଜା କହିଲା, 'ୟାଙ୍କ ସଙ୍ଗରେ ଚାରି ଜଣ ଭେଣ୍ଡା ଭେଣ୍ଡା ବାଘ ଯାଅ, ଯୋଉଁଠି ରାତି ପାହିବ ୟାଙ୍କୁ ଛାଡ଼ି ଦେଇ ଆସିବ, ୟାଙ୍କ ଆଗ ଗୋଡ଼ରେ ଯିମିତି କଣ୍ଟା ନ ବାଜେ।" ବାଘରଜା କଣ କଲା, ବ୍ରାହ୍ମଣ କାନରେ ଏ ଅଳଙ୍କାରତକ ବାନ୍ଧିଦେଲା, ବ୍ରାହ୍ମଣ ମେଲାଣି ହେଲା। ଖଣ୍ଡେ ଦୂର ଯାଇଛି ରାତି ପାହିଲାରୁ ଏ ଚାରି ବାଘଯାକ ତାଙ୍କୁ ଛାଡ଼ି ଦେଇ ଆପଣା ରାଇଜକୁ ଫେରି ଅଇଲେ। ଯାଉଁ ଯାଉଁ ଏକ ଗାଁ ପଡ଼ିଲା, ସେ ଗାଁରେ ଜଣକ ପିଣ୍ଡାରେ କୁକୁଳିଟି ରଖି ଦେଇ ବସିଛି, ଖରା ମଟାଳି ପଡ଼ିଲେ ବାଟେ ବାଟେ ଯିବ ବୋଲି। ଏ ଯୋଉଁ ବ୍ରାହ୍ମଣକୁ କୁଅରୁ ଉଠେଇଥିଲା, ସେ ବ୍ରାହ୍ମଣ ଘର ଭିତରୁ ବାହାରି ପଡ଼ି କହିଲା, 'କିହୋ ସଙ୍ଗାତ ତୁମେ କୁଆଡ଼େ ରହିଗଲ କି? ତୁମ ପାଟୁଆଡ଼େ କୁକୁଳିଟିଏ କାହିଁ? ଏ ବ୍ରାହ୍ମଣ ତ ଏବେ ତୁନ କପଟ ନ ଜାଣେ, କହିଲା ମତେ ୟାଙ୍କୁ ବାଘରଜା ଦେଇଛି। ଏଣେ ହୋଇଥାଏ କ'ଣ ନା ସେହି ରାଇଜର ରଜାପୁଅ ପାଣ୍ଡୁରେ ଖେଳୁଥିଲା ତାଙ୍କୁ କିଏ ନେଇଛି ତା'ର କିଛି ଖୋସାଡ଼ି ମିଳୁ ନାହିଁ; ରଜା ମୁଲକ ଯାକ ଢେଣ୍ଡରା ଦେଇଛନ୍ତି, ଯେ, ମୋ ପୁଅ କୁଆଡ଼େ ଗଲା ଏ କଥାର ଓର ଝଣ୍ଡି ଯେ ଦେଇ ଦେବ, ତାଙ୍କୁ ପାଞ୍ଚଶହ ଟଙ୍କା ଦେବି, ତା ମୁଣ୍ଡରେ ସୁନା ପାଗ ବନ୍ଧେଇ ଦେବି। ଘରୁଆ ବ୍ରାହ୍ମଣ ସେ ବୋକଗୁଟିକୁ ଫିଟେଇ ଦେଖିଲା ତେଲକୁ ସୁନା ହୀରା, ନୀଳା, ମୋତି ମାଣିକ୍ୟରେ ଆଖି ଠେରଉ ନାହିଁ, କହିଲା "ସଙ୍ଗାତ ! ତୁମେ ଏଠେଇଁ ବସିଥାଅ କି ମୁଁ ଆସୁଛି ଟିକାଏ" ୟା କହି ଯିଆ ଯିଆ ରଜାଙ୍କ ନଅରକୁ ଗଲା ବାହାରି, ଯାଇ

ଉଆସରେ ମଣିମାଙ୍କ ଛାମୁରେ ଖବର କଲା, ପୁଅ ଅଲଙ୍କାରମାନ ମୁଁ ଠିକଣା କରିଛି, ଚୋରକୁ ମୋ ଘରେ ରଖେଇ ଆସିଛି ।

ରଜାଙ୍କର ପାଇକ ଗଲେ । ସେ ବ୍ରାହ୍ମଣକୁ ଆଉ ଅଲଙ୍କାର ପୁଟୁଳିଟିକୁ ଆଣି ରଜାଙ୍କ ଛାମୁରେ ପହଞ୍ଚେଇଲେ । ବ୍ରାହ୍ମଣ କହିଲା, 'ଇମିତ ଇମିତି' ମୁଁ ଏ ଗୁରୁଙ୍କୁ କୂଅରୁ ଉଠେଇଲି, ମାତ୍ରେ ବାଘରଜା ମୋତେ ସବୁ ଦେଇଛି । ସେଇଥିରୁ ଏ ସୁନାର ବ୍ରାହ୍ମଣ କହିଲା, "ମଣିମା ! ଏ କଥା ସବୁ ତୁଚ୍ଛା ମିଛ । ମୁଁ କିଆଁ କୂଅରେ ପଡ଼ିଥାନ୍ତି ଯେ ଏ ମତେ ଉଠାନ୍ତା ? ମଣିମା ! ମୁଁ ତାଙ୍କୁ ଚିହ୍ନି ନାହିଁ । ଏ ତୁମ ପୁଅକୁ ତଣ୍ଟି ଚିପି ମାରି ଦେଇକରି ଅଲଙ୍କାରମାନ ଘେନି ପଳାଉଥିଲା, ଅଧ ବାଟରେ ମୁଁ ଅଟକଲି, ବାଘ ଏ ବ୍ରାହ୍ମଣକୁ ଅଲଙ୍କାର ଦେବା କଥା ସମସ୍ତେ ଅପସନ୍ଦ କଲେ, ରଜା ହୁକୁମ ଦେଲେ ଏ ବ୍ରାହ୍ମଣକୁ ନେଇ କାଲି ସକାଳୁ ଶୂଳି ଦିଅ । ବ୍ରାହ୍ମଣକୁ ପାଇକମାନେ ନେଇ ଗଲେ ବନ୍ଦୀଶାଳକୁ । ବ୍ରାହ୍ମଣ କାକୁସ୍ତ ହୋଇ ବନ୍ଦୀଶାଳରେ ଆଣ୍ଠୁରେ ମୁଣ୍ଡ ଭରା ଦେଇ ବସିଥାଏ । ଏତିକବେଳେ ମନେ ପଡ଼ିଗଲା, ବାଘ କହିଲା, ମୁଁ ଭଲା ସାପକୁ ସୁମରଣା କରେଁ, ତା ବାଘର ସାପକୁ ସୁମରଣା କଲାବେଳକୁ ଏକ ଅହିରାଜ ସାପ ଫଁଣା ଟେକି ଆସି ତା ଗୋଡ଼ତଳେ ପହଞ୍ଚି ଗଲା, କହିଲା, "ବାପା ! ମୁଁ ପରା ଆଗରୁ କହିଥିଲି ଯେ ଗୋଡ଼ିଆକୁ ବିଶ୍ୱାସ ନାହିଁ ବୋଲି, ତୁମେ ମୋ କଥା ଶୁଣିଲ ନାହିଁ, ଆଛା ଯାହା ତ ହେବାର ହେଲାଣି, ମୁଁ ସାପଙ୍କ ଭିତରେ ରଜା, ମୁଁ ଯାହାକୁ ଦଂଶିବି ସେ ଆଉ ନ ବଞ୍ଚେ । ମୋ ଯାଉଡ଼ ପାଇଁ ଏକ ଅଟେଇ ଚେରଣିଆ ପାଦ, ମୁଁ ଏକା ଜାଣେ, ସେହି ପାଦ ବୋଲି ଫୁଙ୍କି ଦେଲେ ମୁଁ ଯାହାକୁ ଛୁଇଁଥିବି ସେ ବଞ୍ଚି ଉଠିବ । ତୁମେ ଏ

ପଦକ ଶିଖିଥାଅ , କାଲି ସକାଳୁ ରଜା ମଞ୍ଚକର ଶୋଇଥିବେ ; ତୁମ ହାତ ଲାଗିଲେ ଯାଇଁ ସେ ଭଲ ହେବେ । ଯା କହି ସାପ ଗଲା । ଯାଇଁ ପହଞ୍ଚିଲା ରଜାଙ୍କ ପାଲୁଡ଼ ଘରେ , ରାଜା ନିଦରେ ଶୋଇଛନ୍ତି । ତାଙ୍କୁ ଦଂଶିଦେଲାରୁ ରଜାଙ୍କ ଜୀବ ଛାଡ଼ିଗଲା । ରାଣୀ ରାତିରେ ଉଠି ରଜାଙ୍କୁ ଉଠେଇଲା ବେଳକୁ ରଜା ଉଁ ଚୁଁ ହେବାକୁ ନାହାନ୍ତି । ହଆସଯାକ ହୁରି ପଡ଼ିଗଲା, ରଜାଙ୍କ ଶ୍ରୀ ଅଙ୍ଗରେ ଘାଉଡ଼ ଲାଗିଲା ବୋଲି । ମୁଲକର ଗୁଣିଆମାନେ ଆସି ଯେତେ ପାରୁ ପର୍ଯ୍ୟନ୍ତ ଉପାୟ କଲେ, କାହିଁରେ କିଛି ହେଲା ନାହିଁ । ରାଣୀ ପଟୁକୁ ପଣ କଲେ , ଯେ ରଜାଙ୍କୁ ବଞ୍ଚେଇଦବ ତାକୁ ଏ ମୁଲକରୁ ଅଧେ ଦେବି , ଆଉ ଜେମାଙ୍କୁ ବିଭା କରେଇ ଦେବି । ଏ ବ୍ରାହ୍ମଣ ବନ୍ଦୀଶାଳାରେ ଥାଏ । ସକାଳୁ ଜଗୁଆଳିଙ୍କି କହିଲା, ମୁଁ ଭଲା ଟିକିଏ ରଜାଙ୍କୁ ଦେଖନ୍ତି । ସମସ୍ତେ ଯାକୁ ଟାହିଲିରେ ଉଡ଼େଇ ଦେଲେ , ପଟୁକୁ ଏ କଥା ରାଣୀଙ୍କି ଖବର ହେଲାରୁ ରାଣୀ ଏ ବ୍ରାହ୍ମଣକୁ ଡକେଇ ନେଲେ । ବ୍ରାହ୍ମଣ ଅଟେର ଚରଣିଆ ପଦକୁ ଲେଉଟେଇ କରି ବୋଲି ଫୁଙ୍କି ଦେଲାରୁ ରଜା ଚେଇଁ ଉଠିଲେ । କହିଲେ , ଓହୋ ! କେତେ ଗୁଡ଼ାଏ ଶୋଇ ପଡ଼ିଲି । ରାଣୀ ସେଇଥିରୁ ରଜାଙ୍କୁ ସବୁ କଥା କହି ଗଲେ । ଏ ବ୍ରାହ୍ମଣକୁ ଆଉ ଶୂଳିରେ ଚଢ଼େଇବେ କାଣ ଜେମାଙ୍କୁ ବିଭା କଲେ, ମୁଲକରୁ ଅଧେ ଦେଲେ । ନହର ତୋଟଲେଇ ଦେଲେ , ଏ ବ୍ରାହ୍ମଣ ଜେମାଙ୍କୁ ଘେନି ସୁଖରେ ରହିଲା । ଆଏ, ଏମିତି ଗଲା ଦିନାକେତେ ବିତ , ଦିନେ ଏ ବ୍ରାହ୍ମଣ ରଜା ହେଲାରୁ ଗଲା ପାରିଧିକି , ବନସ୍ତ ଭିତରେ ଏକ ବୁଢ଼ା ଗୋଟେ ମାଙ୍କଡ଼ ଆସି ଲଟ୍ କରି ଏ ବ୍ରାହ୍ମଣ ଗୋଡ଼ତଳେ ପଡ଼ିଗଲା, କହିଲା, ତୁମେ ମୋ ପ୍ରାଣ ରଖିବ,

ତୁମେ ମୋ ଧରମ ବାପ, ମୁଁ ଏ ଜଗତରେ ରଜା, ମୁଁ ତୁମର ମାଙ୍କଡ଼ଟିଏ ତୁମକୁ ଅବା କଣ ଦେବି, ଏ ପଂଳଟିକି ଭେଟି ଦେଲି ଯାହାକୁ ତୁମେ ଖାଇବ । ଯା କହି ବ୍ରାହ୍ମଣ ହାତରେ ରଙ୍ଗଂ ଟହ ଟହ ପଂଳଟିଏ ଦେଇ ମୁଣ୍ଡିଆଟିଏ ମାରି ବିଦା ହୋଇଗଲା । ବ୍ରାହ୍ମଣ ସେ ପଂଳଟିକି ଘେନି ନଅରକୁ ଲେଉଟିଲା, ଭାବୁଥିଲା, ମୁଁ ଆଉ ଯାହାକୁ ଖାଇବି କଣ, ଏ ଦିବ୍ୟସୁନ୍ଦର ପଂଳଟି ମୁଁ ଶାଶୁରକୁ ଭେଟି ଦେବି, ଯା ଭାବୁଣ ନେଇ ଶାଶୁର ରଜାଙ୍କୁ ସେ ପଂଳଟି ଭେଟିଲା । ରଜା ତାକୁ ପାହୁଡ଼ିଲା ଖୋଟା ଉପରେ ଡାକିଆ ତଳେ ରଖି ଦେଇଅନ୍ତି, ଦିନାକେତେ ଗଲାରୁ ସେ ପଂଳଟି କଥା ପାସୋର ଗଲା । ଦିନେ ରଜାଙ୍କ ଝିଅ ପୋଇଲୀଟିଏ ଖୋଟା ଝାଡୁ ଝାଡୁ ପଂଳଟିକି ପାଇଲା, ସେତେବେଳକୁ ସେ ପଂଳଟି ସେମିତି ଗଲାଣି, କହିଲା, ଏ ପଂଳ ତ ଶୁଖି ଗଲାଣି । ଏହା କହି ପଂଳଟିକି ପାଟିରେ ପକେଇ ଦେଲା । ଯେମିତ ଗିଳିଛି ସିମିତ ଝିଅ ଏକ ଖୋଳ ବରଷି ଟୋକୀ ହୋଇଗଲା, ସମସ୍ତେ ତାକୁ ଦେଖି ଆଉ ଚିହ୍ନି ପାରିଲେ ନାହିଁ । ସେ କହିଲା; ରଜାଙ୍କ ମାଣ୍ଡିତଳେ ଗୋଟିଏ ପଂଳଟି ଥିଲା ମୁଁ ତାକୁ ଖାଇଲାରୁ ଏମିତ ହୋଇଗଲି, ରଜା ଯା ଦେଖି ଭାରି ବିସ୍ମୟ ହେଲେ; ଡକେଇଲେ ଜୋଇଁଙ୍କି, ଜୋଇଁଙ୍କି କହିଲେ କହ । ସେ ପଂଳ କେଉଁଠୁ ଆଣିଲ? ଏ କହିଲା ମତେ ଜଗତରେ ମାଙ୍କଡ଼ ଦେଇଥିଲା, ରଜା କହିଲେ ସେ ପଂଳରୁ ଆମକୁ ଆଉ ଗୋଟିଏ ଆଣି ଦିଅ । ଏ କହିଲା ହଉ, ଯା କହି ଯାଇ ପହଞ୍ଚିଲା ପୋର ସେ ଜଗତରେ, ଏ ଜଙ୍ଗଲରେ ପହଞ୍ଚିଲାରୁ ମାଙ୍କଡ଼ ରଜା ଆସି ଯାକୁ ଜୁହାରିଲା । ଏ କହିଲା, ଯିମିତ ପଂଳଟିଏ ଦେଇଥିଲ ସେ ପଂଳରୁ ଆଉ ଦି ଗୋଟି ଆମକୁ ଆଣି ଦିଅ । ମାଙ୍କଡ଼ କହିଲା, ମଣିମା !

ସେ ଫଳ ଆଉ ଆମେ ପାଇବୁଁ କାହୁଁ ? ଆମେ ଯାଇଥିଲୁଁ ଥରେ ଇନ୍ଦ୍ରଙ୍କ ବଗିଚାକୁ ଯେ ବଗିଚା ଗଛ ଫଳ ଫୁଲଯାକ ନଷ୍ଟନାସ୍ତି ଉଲୁକାପାତ କଲାରୁ ମାଳିଯାକ ଯାଇ ଇନ୍ଦ୍ରଙ୍କୁ ଜଣାଇଲେ, ଇନ୍ଦ୍ର ଖୁସି ହୋଇ ମୋତେ ସେ ଫଳଟି ଭେଟି ଦେଇ ଥିଲେ, ମୁଁ ତୁମ ଉପକାର ଶୁଝିବି କ'ଣ ଦେଇ ? ସେ ଫଳଟି ଦେଇଥିଲି ପରା ! ବ୍ରାହ୍ମଣୀ କହିଲା ତେବେ କ'ଣ କରିବା ? ମାଙ୍କଡ଼ କହିଲା, ତେବେ ଚାଲ ସାଙ୍ଗ ହୋଇ ଯିବା ଇନ୍ଦ୍ରଙ୍କ ପାଖକୁ ଏ ବିଚାରେଁ ଯାଇ ପହଞ୍ଚିଲେ ଇନ୍ଦ୍ରଙ୍କ ପାଖରେ, ଇନ୍ଦ୍ର କହିଲେ ସେ ଫଳ ମୁଁ କାହୁଁ ପାଇବି ? ମତେ ସେ ଫଳଟି ଦେଇଥିଲେ ନାରଦ । ମାଙ୍କଡ଼ ଏକଜିଦ କଲାରୁ ସମସ୍ତେ ବାହାରିଲେ ନାରଦଙ୍କ ପାଖକୁ । ନାରଦ କହିଲେ ମୁଁ କୋଉଠୁଁ ଆଣିବି ? ଥରେ ମହାଦେବ ନାଚିଲା ବେଳେ ମୁଁ ବୀଣା ବଜେଇଲି ଯେ ମହାଦେବ ଖୁସି ହୋଇ ମତେ ସେ ଫଳଟି ଦେଇ ଥିଲେ ଏବେ ଚାଲ ସମସ୍ତେ ଯିବା ମହାଦେବଙ୍କ ପାଖକୁ । ମହାଦେବଙ୍କ ପାଖରେ ଯାଇ ପହଞ୍ଚିଲାରୁ ମହାଦେବ କହିଲେ ନାରାୟଣ, ଦିନେ ବିଷ୍ଣୁ ଆସିଥିଲେ ମତେ ଭେଟିବାକୁ ଯେ ସେ ସେଦିନ ସେ ଫଳଟି ଦେଇ ଯାଇଥିଲେ, ମୁଁ ଆଉ ସେ ଫଳ କାହୁଁ ଆଣିବି ? ତେବେ ଚାଲ ସମସ୍ତେ ଯିବା ବିଷ୍ଣୁଙ୍କ ପାଖକୁ । ସେଇଥିରୁ ବ୍ରାହ୍ମଣୀ ମାଙ୍କଡ଼, ଇନ୍ଦ୍ର, ନାରଦ ଆଉ ମହାଦେବ ସମସ୍ତେ ଯାଇ ବିଷ୍ଣୁଙ୍କ ପାଖରେ ପହଞ୍ଚିଲେ । ବିଷ୍ଣୁ ସମସ୍ତଙ୍କୁ ଦେଖିଲାକ୍ଷଣି ଭାରି ମର୍ଯ୍ୟାଦା କଲେ, ସବୁ ସମାଚାର ଯାକ ଶୁଣିଗଲେ, କହିଲେ ଆଚ୍ଛା ଆମେ ସେ ଫଳ ଦେବା, ଆମ ବଗିଚାରେ ସେ ଫଳ କୁଟ କୁଟ । ଯା କହି ବିଷ୍ଣୁ ମହାଦେବ ହାତ ଧରାଧରି ହୋଇ ଆଗରେ ଗଲେ, ଆଉ ସମସ୍ତେ ପଛେ ପଛେ ବଗିଚା ଭିତରକୁ ଗଲେ, ଖଣ୍ଡହୁର ଯାଉଛନ୍ତି କାନବୋବାଳି ଶୁଭିଲା, ସମସ୍ତେ ଯାଇ ପହଞ୍ଚିଲା

ବେଳକୁ ଖଣ୍ଡହୁରେ ସେ ଲୋଭୀ ମହାଜନ ଆସେ ଅଭ୍ୟାଗତଙ୍କୁ ଓଟାହରେ ଟେଂଗେଇ ଦେଇଥିଲା, ତନ୍ଟା କଳା ପାଉଜ ଶିମିଳୀ ଗଛର କଣ୍ଟାରେ ତା ଅଷ୍ଟାଙ୍ଗଶରୀର ଫାଟୁଛନ୍ତି, ସେ ,ବାପ ଲୋ ମାଆ ଲୋ. ବୋଲି ଡକା ବୋବାଳି ଛାଡୁଛି । ମହାଦେବ ଯା ଦେଖି ଟିକିଏ ମୁହଁ ଶୁଖେଇ ଦେଲେ । ବିଷ୍ଣୁ କହିଲେ, ଆହା ଜିବା, ଲୋଭ୍ ଅର୍ଜିଲା କରମ ଟୋ ଭୁଞ୍ଜୁଛି । ଖଣ୍ଡହୁର ଗଲାରୁ ବିଷ୍ଣୁ ଏ ବ୍ରାହ୍ମଣକୁ କହିଲେ, ଯା ଏ ଆଗ ଗଛମୂଳେ ଫଂଳ ପଡ଼ିଥିବ, ଲୋଡେ ମନଇଛା ଗୋଟେଇ ଆଣିବୁ । ଏ ବ୍ରାହ୍ମଣ ସେ ଗଛମୂଳକୁ ଗଲାବେଳକୁ ଦେଖିଲା ଯେ ତା'ରଙ୍କ ଭାଉଜା ଚୂଲି ପାଖରେ ପଡ଼ି ମରିଥିଲା । ସେ ବର୍ଷି ଗଛମୂଳ ଓଳଉଛି, ଲୋଭୀ ପୁଅ କୂଅରେ ପଡ଼ି ମରିଥିଲା । ସେ ପୁଅ ବସି ଫଂଳପାକ ଗଦା କରୁଛି । ବ୍ରାହ୍ମଣ ବିଷ୍ଣୁଙ୍କୁ ଗୁହି କହିଲା, ଏ ତ ମୋ ପୁଅ, ମୋ ଭାଉଜା । ବିଷ୍ଣୁ କହିଲେ, ମହାଦେବ । ଏ ମୋ ଭକତ ବ୍ରାହ୍ମଣ, ସେ ଦିନ ଆମ ତିହିଙ୍କୁ କଷା ଚାଳ ବନ୍ଧା ପକେଇ ଖାଇବାକୁ ଦେଇଥିଲା, ସେ ତୁମ ଭକତ ମହାଜନ ଆମକୁ ଘଉଡ଼େଇ ଦେଇଥିଲା । ବ୍ରାହ୍ମଣ ବୈକୁଣ୍ଠକୁ ସ୍ୱଦେହରେ ଆଇଲା, ପୁଅ ମାଇପଙ୍କୁ ପାଇଲା ଆଉ ସେ ମହାଜନ ତା ଫଂଳ ଭୁଞ୍ଜୁଛି । ଦେଖିଲ, କିଏ ଦାଦରଦୋଡ଼ କରି ଦିଏ ! ମହାଦେବ ତଳକୁ ମୁହଁ ପୋତି ରହିଲେ । ବ୍ରାହ୍ମଣ ଫଂଳ ନେଇ ପୁଅ ମାଇପଙ୍କୁ ସାଙ୍ଗରେ ନେଇ ନଅରକୁ ଫେରିଲା । ସି ରାଣୀଙ୍କୁ ନେଇ ଘର ଦୁଆର କଲା ।

ଗୋଟିଏ ଠକ ଆଏ ଯେ, ତା ବଂଶ ଓଳରେ ପୂର୍ବ

# ଦି ସଙ୍ଗାତ

ଗୋପାଳ ଚନ୍ଦ୍ର ପ୍ରହରାଜ

ଏକ ଗାଇଁରେ ବ୍ରାହ୍ମଣପୁଅ ଆଉ ସାଧୁପୁଅ ଦିହେଁ ସଙ୍ଗାତ ହେଲେ । ପିଲା ଦିନରୁ ତାଙ୍କର ଜମିଥିଲା ମେଣ୍ଟବାଳ, ସେ ଦିହେଁ ଦଣ୍ଡେ, କେଉଁଠି ଛାଡ଼ି ହୁଅନ୍ତି ନାହିଁ । ଦିହେଁଯାକ ଚାଟଶାଳୀରେ ପଢୁଥାଆନ୍ତି । ଦିହିଁଙ୍କ ଦିହେଁ ବାଆଁସରା ବଗୁଲିଆ ହୋଇ ବୁଲନ୍ତି, ପାଠ ଶାଠ ଜମାରୁ ପଢ଼ାପଢ଼ି କଲେ ନାହିଁ । ତାଙ୍କୁ କି ଅକ୍ଷର ବହୁତେଇ ପରଜତ ହେଲା । ଏଣେ ବି ଘରେ କୁଟାଖଣ୍ଡିକ ଦିଖଣ୍ଡି କରନ୍ତି ନାହିଁ, ଏଇମିତି ହେଲାରୁ ବାପମାନେ ତାଙ୍କୁ ଚାଟଶାଳୀରୁ ଉଠେଇ ଆଣିଲେ । ପାଠ ଶାଠ ନ ପଢ଼ିଲ ତ ନାହିଁ, ଘରର କାମ ଧନ୍ଦା ଭଲା କରନ୍ତୁ, ତାଇ ବି କଲ ନାହିଁ । ଦିହିଁଙ୍କା ଦିହେଁ ଦିନ ଯାକ ସାଙ୍ଗ ହୋଇ ବାଇଦିଗୁ ଭଳିଆ ଅଗୁଦଣ୍ଡ ପାଟ ବୁଲୁଥାଆନ୍ତି । ଘରେ ଥାଳିଏ ଲେଖାଏଁ ଭୋଜନ ମାତ୍ର ଦେଇ ଦିନ ନାହିଁ, ରାତି ନାହିଁ, କୁଆ ଡାକନ୍ତା ପାରା ରଙ୍ଗାଂରେ ମାତି ଥାନ୍ତି । ଦିହ ଘରକୁ ଅଇଲାରୁ ବାପ ମା ଧିକାର କରି ତାଙ୍କୁ କେତେ ଅପସରା ମାରନ୍ତି, କେତେ ଚିଡ଼ି ଡାକର କରନ୍ତି । ଦିନକର ବି ସଙ୍ଗାତ ବଡ଼ରା ବିରଇ ହେଲେ, ବାପ ମାଆ ତ ସବୁବେଳେ ଆମକୁ ଏମିତି ହୁର୍ ହୁର୍ ଚୁର୍ ଚୁର୍ କଲେ । ଗ୍ଲେ ଆମର ବିଦେଶ ଯିବା ବାହାରି । ପରର କାମ ଧନ୍ଦା କରି ଆମ ପେଟ ପାଳିବା, ଆଉ ଏ ଘରେ ପାଣି ଚୁଇଁ କରି ନାହିଁ । ଟ୍ରା ବିଗୁଡ଼ି ମାନକଥା ମନରେ ଥାଏ । ଦିନେ ରାତି ନାଙ୍ଗୁଲ୍ଲ ଜାଙ୍ଗୁଲ୍ଲ ହେଉଁ, ଦିହେଁଯାକ ଘରୁ ବାହାରି ପଡ଼ିଲେ, ଗଲେ । ଯାଉ ଯାଉ ଏକ ଗାଇଁରେ ସନ୍ଧ୍ୟାବେଳ ଲାଗିଲା । ଦିହିଙ୍କି ହେବେ ସାଙ୍ଗରେ ତ କାଣୀ କଉଡ଼ି କଡ଼ାଏ ଆଣି ନାହାନ୍ତି । ଏଣେ ପେଟକରେ କରଡ଼ି ଜଳୁଥାଏ, ଭୋକରେ ହଂସା ଉଡ଼ୁଥାଏ । ସେ

ରାଇଜରେ ଏକ ମହାଜନ ଘରେ ଯାଇ ପହଞ୍ଚିଲେ । ଏ କ୍ଷିତି ପିଲା ନୁହନ୍ତି, କୋଡ଼ିଏ କୋଡ଼ିଏ ବରଷର ପାଞ୍ଚୁହଟା ଭେଣ୍ଡା ଟୋକାଏ । ମହାଜନ ତା ଦାଣ୍ଡରେ ଟହଲ କରୁଛି । ଦେଖିଲା ଯେ, ଏ ବିଜଣ ବିଦେଶୀ ଆସି ପହଞ୍ଚିଲେଣି । ଯାଙ୍କୁ ପଚାରିଲା, ବାପ ! ତୁମର ହାଲହକିକତ କଅଣ ? ଏ ବିହେଁ କହିଲେ, ଆମର ଚୂଲ ଚାଳ ନାହିଁ, ଅଘରବାସ । ଆମେ ପର ଘରେ ମୂଲ ଲାଗି ପେଟ ପୋଷିହୁବୁ । କିଛି ପଇସା କଉଡ଼ି ନିବୁଁ ନାହିଁ । ଖାଲି ମୁଠିଏ ପେଟକୁ ଖାଇବୁଁ, ଖଣ୍ଡିଏ ଲେଖାଏ ପିନ୍ଧିକୁ ପିନ୍ଧିବୁ, ମହାଜନ କହିଲା ତେବେ ମୋ ଘରେ ଚାକିରି କର । ମହାଜନ ପଚାରିଲା, ତୁମେ ଭଲା କି କାମ କରିବ ? ଏ କହିଲେ ଆମକୁ ଯୋଉ କାମରେ ଲଗେଇବ, ଆମେ ତାହା କରିବୁଁ ।

ଏଣେ କଅଣ ହୋଇଥାଏ ନା, ମହାଜନର ଗୋଟିଏ ଓଲେଇ ଗାଈ ଥାଏ ଯେ, ସେ ଗାଈକି ମୂଲକଯାକ କେହି ବଗାରଖା କରି ପାରିଲେ ନାହିଁ । ଯା ବାଡ଼ ଡେଇଁ, ତା ବାଡ଼ ଡେଇଁ କେତେ ଲୋକଙ୍କ ବାଡ଼ି ବଗିଚା ନହନାସ୍ତ କରୁଥାଏ । କେତେ ବିଲ, କେତେ ପାଚିଲ ଉଜାଡ଼ନସ୍ତ କରେ । ଏଥିପାଇଁ ମହାଜନ ନିତି ପଡ଼ୋଶୀଙ୍କଠଉଁ ବୋଲଣା ଶୁଣେ । ମହାଜନ ବ୍ରାହ୍ମଣପୁଅଙ୍କୁ କହିଲା, — ସକାଳୁ ଗଣ୍ଡାଏ ଖାଇ ଦେଇ ତୁ ମୋ ଗାଈଟିକି ନେଇ ଚରେଇବୁ, ଦିନ ଗଡ଼ିତ ହେଲାବେଳକୁ ଆଣି ଗୁହାଳରେ ପୂରେଇଦବୁ । ମୁଁ ତତେ ଖାଇବାକୁ ପିନ୍ଧିବାକୁ ଦେବି । ତେଣୁ କଅଣ ହୋଇଥାଏ ନା, ମହାଜନ ବାଡ଼ିରେ ଗୋଟିଏ କଥାଁସୁଆଦିଆ ଆମ୍ବଗଛ ଥାଏ ଯେ, ସେ ଆମ୍ବଗଛ ମୂଳ ଭିତରେ ଗୋଟେ ପାତାଳଫମ୍ପା ଛିଦ୍ର ଥାଏ ଯେ, ଯେତେ ଝିଙ୍କା ଯେବେ ଗରା ପାଣି ଦେଲେ ସେ ଗଛ ମୂଳରେ ପାଣି ଜମାରୁ ରହେ ନାହିଁ । ମହାଜନ ସେ ସାବୁତପୁଅଙ୍କୁ

କହିଲା :— ସକାଳୁ ଗଣ୍ଡିଏ ଖାଇ ଦେଇ ତୁ ମୋ ବଗିଚାରେ କଥାଁ ସୁଆଦି ଆମ୍ବ ଗଛ ମୂଳରେ ମାଟିଆରେ ପାଣି ଦବୁ । ସେ ଗଛର ମଳାରେ ପାଣି ଟୁମାଟୁମ କରି ଭରତି କରି ଦେଇ ସନ୍ଧ୍ୟାବେଳକୁ ଘରକୁ ଆସିବୁ । ମୁଁ ତତେ ଖାଇବାକୁ ପିଇବାକୁ ଦେବି । ଦି ସଙ୍ଗାଂତଯାକ ଝିଅହାଡ଼ିଗରି ହେଲେ, ଆମ କରମ ତ ଭାରି ସଲଖ ! ତୁମେ ତ ଖାଲି ଗୋଟିଏ ଗାଈକି ଜଗିବ । ମୁଁ ତ ଗୋଟିଏ ଗଛରେ ପାଣି ଦେବି । ଏହିକି କାମ ସାରି ଦେଇ ଦିହେଁଯାକ ଆନନ୍ଦରେ ରାଣ୍ଡିପୁଅ ଅନନ୍ତ, ଭଳିଆ ଅଢ଼ିନ୍ତ ହେଇ ଏ ମହାଜନ ଘରେ ରହିବା ।

ଏ ଚାକରୀ କଥା ଠିକଣା ହେଲାରୁ ସେଦିନ ରାତିରେ ଦି ସଙ୍ଗାଂତଙ୍କୁ ମହାଜନ ଘ ଠାକୁର ମନ୍ଦିରରେ ରହେଇ ଖାଇବା କଥା ଖଞ୍ଜା କରିଦେଲା ।

ତହିଁ ଆରଦିନ ବଡ଼ିଭୋରରୁ ଉଠି ଦି ସଙ୍ଗାଂତଯାକ ଗାଧୁଆ ପାଧୁଆ ସାରି ଠାକୁର ମନ୍ଦିରରେ କଂସିଏ ଲେଖାଏଁ ପଖାଳ, ଗଣ୍ଡିଏ ଲେଖାଏଁ କଦୁରା ଆମ୍ବୁଲ ମାରି ଦେଇ ଯୋଉଁ କାମକୁ ବାହାରିଲେ । ବ୍ରାହ୍ମଣପୁଅ ଯିମିତି ସେ ଗାଈଟିକି ପଘାରୁ ଫିଟେଇ ଦେଇଛି, ସେ ଗାଈ ମାଇଲା ଚଘା ଦରା, ଏକଦମ୍ ଯାଇ ପାଏ ବାଟରେ ଦମ୍ ନେଲା ! ବ୍ରାହ୍ମଣପୁଅ ସେ ଗାଈ ପଛରେ ଉଇଂସଇଂ ହୋଇ ଗୋଡ଼େଇ ଥାଏ । ଯିଠେଇଁ ଯାଇ ପହଞ୍ଚିଲା ବେଳକୁ ଦେଖେ ଗାଈ ତ ! ଯା ବାଡ଼ ଡେଇଁଲା ତା'ର ଖଦା କଲା, କାହାର ଶାଗପଟାଳି, କାହାର କଦଳୀବାଡ଼ି କାହାର ଲଙ୍କା ମରିଚ କିଆରୀ, ଇମିତି ପଣି ଯାହା ଖାଇଲା ତ ଖାଇଲା ବାକୀ ସବୁ ଖୁରାରେ ଚକଟି । ଚକଟି କରି ହୁରଜୁର୍ କଲା । ଯାହାଙ୍କର ଖଦା କଲା ସେ ସମସ୍ତେ, ଏ ରଖୁଆଳକୁ ବାର ଅବରକିଆ କରି ଗୋଧୁ

ଥାଆନ୍ତି । ଏଣେ ବାହ୍ମଣପୁଅ ଗାଈ ପଛରେ ଦଉଡ଼ି ଦଉଡ଼ି ଲୋଗ୍ରା କୋତରା ହୋଇ ତା'ର ହାଲବାତ ଉଠିଯାଉଥାଏ । ସେ କଅଣ ଜାଣିଚି ଯେ, ଏହିକି ଚାଲାଣ୍ଡୀ ଗାଈଟାଏ ବୋଲି ? ସନ୍ଧ୍ୟାବେଳକୁ ଗାଈ ଘରକୁ ଫେରିଲାବେଳକୁ ବ୍ରାହ୍ମଣପୁଅ ଅଣନିଶ୍ୱାସୀ ହେଲାଣି, ତା କାନ କାଟିଲେ ବଚନ ବାହାରିବ ନାହିଁ ।

ଏଣେ ଆଉ ସଙ୍ଗାତ ଦିଇଟା ମାଠିଆ ନେଇ ମହାନନ୍ଦ ବଗିଚା ବାମୀରୁ ପାଣି କାଢି ମାଠିଆକୁ ମାଠିଆ ପାଣି ନେଇ ସେ ଆମ୍ବଗଛମୂଳେ ଅଜାଡୁଥାଏ । ଇମିତି ଦିନ ଭିତରେ ପଚାଶ କି ଦି ପଣ ପାଣି ନେଇ ଗଛମୂଳେ ଢାଳିଲାଣି । ତେବେ ବୁଢ଼ା ସେ ମଲା ପୁରିବାକୁ ନାହିଁ । ସେ ପାଣିସାକ ଟିକକଠିରେ ହିଁ ସବୁ କୁଆଡ଼େ କୋରଡ଼ ଭିତରେ ଶୋଷିହୋଇ ଯାଉଥାଏ ! ଏତ ସୁକୁମାରଆରେ ପିଲାଦିନୁ ବଢ଼ିଚି । କେତ ବହପରେ କୂଅରୁ ପାଣି ଓଟାରି ଓଟାରିକା ଲା ହାତରୁ ଗୋଟାଏ ଗୁଲ ଫୁଟି ଗଲାଣି । ଏଣେ ପେଟରୁ ନାଗ ଉଠିଲାଣି, ପାଣି ଦେଇ ଦେଇ ସନ୍ଧ୍ୟା ବୁଡ଼ିଲାରୁ ବସାକୁ ଫେରିଲା ।

ଦି ସଙ୍ଗାତ ତ ମନେ ମନେ ଭାରୀ ସିଆଣିଆ । ବ୍ରାହ୍ମଣପୁଅ ଭାବୁଥିଲା, ସଙ୍ଗାତ ସେ ଆମ୍ବଗଛରେ ଦି ମୁଣ୍ଡା ପାଣି ଢାଳି ଦେଇ କେଉଁଠି ନିଶ୍ଚିନ୍ତରେ ଦିନଯାକ ସେ ବଗିଚାରେ ଶୋଇଲା, ମୁଁ ଏ ଗାଈଟା ପଛରେ ଗୋଡ଼େଇ ଗୋଡ଼େଇ ଥୋକରା ହେଲିଣି । ଏ ଗାଈ କଥା ସଙ୍ଗାତକୁ କହିବି ନାହିଁ । କାଲି ମୁଁ ଗଛରେ ପାଣି ଦେବି କି, ସଙ୍ଗାତକୁ ଗାଈ ଜଗିବାକୁ ପଠେଇଦେବି । ସାଧବ ପୁଅ ମଧ୍ୟ ସେହିଁ ଚତୁର । ସେ ଭାବୁଥିଲା, ସଙ୍ଗାତ ଗାଈକି ଛାଡ଼ିଦେଇ ଗାଈ ଚରୁଚି । ସଙ୍ଗାତ ତ ଗଛ ଛାଇରେ ଦିନଯାକ ନିଘୋମ ଶୋଇଲା । ମୁଁ ପାଣି କାଢି କାଢି ମଲି । ଏ ଗଛ କଥା ସଙ୍ଗାତକୁ

କହିବି ନାହିଁ । କାଲି ମୁଁ ଗାଈ ନେଇବି । ସଙ୍ଗାତଙ୍କୁ ଆମ୍ବଗଛରେ ପାଣି ଦେବାକୁ ଲଗେଇ ଦେବି । ଏମିତି ବି ସଙ୍ଗାତ ଯୋଜନା ମନକଥା ମନେ ରଖିଲେ, ମହାଜନ ଘରକୁ ଫେରିଲେ ।

ବ୍ରାହ୍ମଣପୁଅ ପଚାରିଲା, କି ହୋ ସଙ୍ଗାତ ! ଆଜି ଦିନଟି କେମିତି ଗଲା ? ମହାଜନପୁଅ କହିଲା, ସଙ୍ଗାତ ! ମୁଁ ତ ବି ପୁରୁଣା ପାଣି ସେ ଗଛମୂଳେ ଇଢ଼ି ଦେଲାକ୍ଷଣି ମୋ ପଲାଟା ଟୁକୁଟେକ୍ ଭରିଗଲା । ମୁଁ ତ ଗଛମୂଳେ ଦିନଯାକ ଛୁଟା ଶୋଇଛି । ଏ ଦୁଃଖ କଥା ଚୁହିବା କଥା ନୁହେଁ । ତୁମେ ତୁମେ ଆଜି କେମିତି କ'ଣ କଲ କହିଲ ଭଲା ? ବ୍ରାହ୍ମଣପୁଅ ତ ତହୁଁ ତରକା ସେ କହିଲା ସଙ୍ଗାତ ! ଗାଈଟି ପୋର୍ ଏତିକି ସୁଆର ମୁଁ ଯିମିତି ତାକୁ ଗୁହାଳରୁ ଫିଟେଇ ଦେଇଛି ସିମିତି ସେ ଗାଈ ସିଆଏ ହିଆଏ ଏ ଗାଁ ମୁଣ୍ଡ, କାସ୍ତୁବନ୍ଧ ପଣ୍ଡାକୁ ଗୁଳିଗଲା । ସେତେବେଳେ ତ ଦିନଯାକ ଚରୁଚି, ମୁଁ ତ ପଣ୍ଡା ବରଗଛ ଛାଇରେ କାନ ପକେଇ ଦେଇ ନିଘମ ଶୋଇଛି । ଟିକେଟେ ବେଳକୁ ଯାଇ ମୋ ନିଦ ଭାଙ୍ଗିଲା । ଦେଖିଲାବେଳକୁ ବେଳ ଆସି ରତା ମାରିଲାଣି । ମୁଁ ସେଇଠୁ ଗାଈଟିକୁ ଘରକୁ ଅଡ଼େଇ ଆଣି ବାନ୍ଧି ଦେଲି । ଏମିତି ଚାକିରି ମୁଁ କି ଆଉ ଛାଡ଼େ ? ହେଲେ କଅଣ ହବ, ସଙ୍ଗାତ ! ମୋ ଗଛ ମୂଳେ ମୁଁ ଶୋଇଲି ଯେ, ଭୂଇଁରେ ଶୋଇ ପଡ଼ିଲି । ଢଗରା ପିମ୍ପୁଡ଼ି ଗୁଡ଼ାଏ ସେ ଗଛମୂଳରୁ ବାହାରି ମୋ କାନମୁଣ୍ଡରେ କାମୁଡ଼ି ପକେଇଲେ । ମୁଁ କାଲିଠୁଁ ଖଣ୍ଡେ ଖଟିଆ ସାଙ୍ଗରେ ନେଇଯିବି ଯେ ଗାଈ ଚରୁଥିବ, ମୁଁ ଗଛମୂଳେ ଖଟିଆ ପକେଇ ବେଅଡ଼କ୍ ଶୋଇଥିବି ।

ତହୁଁକି ତହେଁ ତ ସିଆଣାରେ କଥା ଭାଗା ହେଉଛନ୍ତି । ସାଧୁତ ପୁଅ କହିଲା — ସଙ୍ଗାତ ! ଯାହା ହବାର ତ ହେଲା,

ତୁମେ କାଲି ଏ ଗଛରେ ପାଣି ଦିଅ କି, ମୁଁ ଗାଈ ଜଗିବାକୁ ଯିବି। ବ୍ରାହ୍ମଣ ପୁଅ କହିଲା, ହଉ ତେବେ। ଏକଥା ଶୁଣି ବଣିଆଁ ଦିହେଁ ମନେ ମନେ ମହାଖୁସି! ସାଧୁପୁଅ ଗଣ୍ଡିଏ ପଖାଳ କରିଦେଇ ମହାଜନ ଘରୁ ଖଣ୍ଡେ ଖଟିଆ ମାଗି ଖଟିଆଟିକୁ ମୁଣ୍ଡେଇଲା। ଗାଈଙ୍କ ଗୁହାଳରୁ ଫିଟେଇ ଦେଲା। ଗାଈ ତ ଚରୁଛନ୍ତି, ସାଧୁ ପୁଅ ତ ଖଟିଆ ମୁଣ୍ଡେଇ ତା ପଛେ ପଛେ ଚରୁଛନ୍ତି! ଏଣେ ଗାଈ ପଡ଼ିଆରେ ଚରୁଛନ୍ତି ନା' ଖଟିଆ ବୋଝ ମୁଣ୍ଡେଇବ? ଖଟିଆଟିକୁ କୋଉଠେଇଁ କାଟରେ ରଖିଦେଇ କରି ଗଲେ ସେ ଖଟିଆକୁ କିଏ ଯେବେ ନେଇ ଚାଲି ଯିବ, ତେବେ ମହାଜନ ମୋ'ର ଖଟିଆ ଦାବି କରି ବସିବ ଯେ! ଏ 'ବୋଝ ଉପରେ ନନ୍ଦା ବଜା' ନ୍ୟାୟ ହେଲା। ମହାଜନପୁଅ ଦିନଯାକ ଦିନବରେ ବେଠିଆ ହୋଇ ଖଟିଆ ମୁଣ୍ଡେଇ ଥାଏ, ନସର ପସର ହୋଇ ଚରୁଛି ଥାଏ। ଏଣେ ଗାଈଙ୍କ ସେପଟ ସେ ଗାଈ ଖଣ୍ଡା କରୁଥାଏ, ତାଙ୍କ ଓହୁଁ ଉପର ତଳ ସାତ ପୁରୁଷ ଉଦ୍ଧାର ଶୁଣୁଥାଏ। ଏମିତି ଦିନେ ପ୍ରକାରେ ସନ୍ଧ୍ୟା ସୁଜା। ଖଟିଆକୁ ଆଉ ଗାଈଙ୍କି ଘେନି ଆସି ମହାଜନ ଘରେ ପହଞ୍ଚିଲା ବେଳକୁ ତାକୁ ଟେଁ ଲାମାରି ଯାଉଥାଏ, ତା ଦୁଇ ଆଖି ଆଖି ହୋଇ ଯାଉଥାଏ। ତା ପାଟିରୁ ବାକ ବାହାରୁ ଥାଏ।

ଏଣେ କଅଣ ହୋଇଛି ନା' ବ୍ରାହ୍ମଣପୁଅ ତ ବଣି ହାତ ଗାଡ଼ିଆର କିଆରୁ ମାଟିଆକୁ ମାଟିଆ ପାଣି କାଢୁଛି, ଆମ୍ବଗଛ ମୂଳେ ଅଜାଡୁଛି, ପଣେ କି ବି ପଣ, କି ଗୁରି ପଣ, କି କେତେ ମୋ ପାଣି କାଢିଲାଣି ତା'ର ଅଟକଳ ନାହିଁ। ତେବେ ସୁଜା। ସେ ଗଛ ମଳାରେ ପାଣି ଟିମାଟିମ ନ ହେଲା। ସନ୍ଧ୍ୟାବେଳକୁ ବ୍ରାହ୍ମଣପୁଅର ଦେହ କଟମଟ ପଙ୍କିଲାଣି। ବେଶି ଦିରା ହାତ ଆଉ ନୁଆଁଇ ହେବାକୁ ନାହିଁ। ଏଣେ ହାତ ପାପୁଲିରୁ ପାରମ୍ଭେ, ଗୁଲ ଉଠି ଗଲାଣି। ସନ୍ଧ୍ୟା

ବେଳକୁ ମାଠିଆ ଧରିଧ ଆଣି ମହାଜନ ଘରେ ପହଞ୍ଚିଲା ବେଳକୁ ସେ ବରଡାପତରେ ଭଳିଆ ଥରୁଥାଏ । ତା ଦିହରୁ ସତେ ଯିମିତି ଏଇଲାଗେ ଜୀବ ଛାଡ଼ିଯିବ । ତା ଦିହରୁ ତୁହାକୁ ତୁହା ଶ୍ରମଜଳ ବୋହି ଯାଉଥାଏ ।

ଦିହେଁଯାକ ଯିମିତି ଭେଟ ହେଲେ, ଏ କହିଲା, ସଙ୍ଗାତ! ଇମିତି ଅବିଶ୍ୱାସୀ କଥା କରନ୍ତି କି ? ଏ ଗାଈଟା ଏହିକି ଉଦ୍ଦଣ୍ଡୀଟାଏ ! ତୁମେ ସେଥର ମୋତେ 'ବେଢ଼ ଉପରେ କୋଉଠି ଦେଲା ଭଳିଆ ଦିନଯାକ ମହଣେ ଓଜନର ବୋଝଟାଏ ଧରିଆ ମୋ ମୁଣ୍ଡରେ ବୁହାଇଲ ! ଆଉ ସଙ୍ଗାତ କହିଲା, ତୁମେ ଏବେ କୋଉଁ ବିଶ୍ୱାସପାଣିଆ ନ କଲ କି ? ସେ ଗଛରେ ଲୋକେ ପାଣି ଦେବ ; ସେ କୁଆଡ଼େ ଶୋଷି ଦେଉଛି ବୋଲି ଏ କଥା ତୁମେ ମତେ କିଆଁ ନ କହିଲ ? ପଛକୁ ଦିହେଁଯାକ ଆପଣା ଆପଣା କାଇଁକି ମନାମନି ହେଲେ । କହିଲେ, ଯାହା ତ ହେବାର ହେଲାଣି । ଶୁଙ୍କର ଆଉ ଆମକୁ ପୋଷେଇବ ନାହିଁ । ଏଠୁଁ ଚାଲେ ବନେ । ଚାଲ ଆଜ କୋଉଁଠି ଶୁଙ୍କର ଦେଖିବା । ବାହୁଣାପୁଅ କହିଲା — ସେ ଗଛମୂଳ ଏତେ ପାଣି କିଆଁ ଶୋଷୁଛି କି ? ମୁଁ ଜେରେଇଲଣି ତା ମୂଳରେ ଗୋଟାଏ ହଣ୍ଡାର ଅଛି, ସେ ହଣ୍ଡାରରେ କିଛି ସୁନାମାଲ ଅଛି । ଚାଲ ଆଜି ରାତିକାରାଏ ସେ ଗଛମୂଳ ଖୋଳି ସେ ପୋତା ନେଇ ନିଆଁକଖାଦେକ ହରଗଞ୍ଜି କରି ରାତି ନ ପାହୁଣୁ ଏଠୁଁ ଚମ୍ପଟ ମାରିବା । ଯା ବିଚାରିବାରେ ହୋଇ ମହାଜନ ଘରେ ସୁତରରେ କୋଡ଼ି କାଙ୍କ ଠୋକେଇ ଥିବା ଜାଗାକୁ ଉଶ୍ବିଲେ । ରାତିରେ ସମସ୍ତେ ଖାଇପିଇ ଘମାଘୋଟ ନିଦରେ ଶୋଇ ପଡ଼ିଲାରୁ, ଦଣା ଗରଜିଲାରୁ ତୁନୀ ତାନି ହି ସଙ୍ଗାତ ଉଠି

କୋଡ଼ି କାଙ୍କ ଚୋକେଇ ନେଇ ସେ ଆମ୍ବଗଛ ମୂଳକୁ ଗଲେ । ବ୍ରାହ୍ମଣ ପୁଅ ସେ ଗଛମୂଳ ଖୋଳୁଥାଏ, ମାଟିକି ଚୋକେଇରେ ଭରତି କରି ସାଧୁତପୁଅ ଆଡ଼କୁ ବଢ଼େଇ ଦଉଥାଏ । ସାଧୁତପୁଅ ସେ ମାଟିକି ନେଇ ଖଣ୍ଡୁଦୂର ଦୂରରେ ଗଦେଇ ଦଉଥାଏ । ଇମିତି ଖୋଳି ଖୋଳି ତିନ ହାତ କି ଚାରି ହାତ ଗହୀର ଗୋଟିଏ ଖାତ ହେଲାଣି । ଏହି ସମୟରେ ବ୍ରାହ୍ମଣପୁଅ କାଙ୍କ ମାରିଲାବେଳକୁ ' ଗୋଟିଏ ପିତଳ ଗରା ସେ କାଙ୍କ ମୁଣ୍ଡରେ ବାଜିଲା । ବ୍ରାହ୍ମଣପୁଅ ବୁଝିଲା ଯେ, ମୁଁ ତ ଖାତ ଭିତରେ ରହିଲି, ସଙ୍ଗାତ ତ ଉପରେ ରହିଲା । ମୁଁ ଏ ପୋତାମାଲ ଗରାଟିକି ଉଠେଇ ସଙ୍ଗାତ ହାତକୁ ବଢ଼େଇ ଦେଲେ, ମୁଁ ଖାତରୁ ଉଠୁ ଉଠୁ ସଙ୍ଗାତ ଯେବେ ସେ ପୋତାମାଲ ଗରାଟି ନେଇ ଖସ୍ୟାଗାଂ କରନ୍ତି ? ଏ କଥା ମନେ ମନେ ପାଞ୍ଚିକରି କହିଲା, ସଙ୍ଗାତ ! କାଙ୍କରେ ହାଣି ହାଣି ମୋ ଅଣ୍ଟା ପିଠି ଉପୁଡ଼ି ଗଲାଣି । ତୁମେ ଏ ଖାତ ଭିତରକୁ ଆସନ୍ତୁ, ଥୋଡ଼େ ମାଟି ଖୋଳନ୍ତୁ କି ? ମୁଁ ଉପରକୁ ଉଠିଯାଇ ମାଟିକି ଚୋକେଇରେ ନେଇ ପକେଇ ଦଉଥିବି, ମଝିରେ ମଝିରେ ଟିକିଏ ଦମ୍ ମାରନ୍ତି । ସାଧୁତପୁଅ ତ ଏତେ ଛନ୍ଦ ମନ୍ଦ ନ ଜାଣେ । ସେ କହିଲା, ହଉ ତେବେ, ଯା କହି ସାଧୁତପୁଅ ସେ ଖାତ ଭିତରକୁ ଗଲା । ବ୍ରାହ୍ମଣପୁଅ ଉପରକୁ ଉଠି ଆଇଲା । ସାଧୁତପୁଅ କାଙ୍କରେ ପାଞ୍ଚାଏ ପକାଇଲା ବେଳକୁ ଗରା ବାଜିଲା । ସାଧୁତ ପୁଅ କହିଲା:- ସଙ୍ଗାତ ! ଗରାଟାଏ ! ଯା କହି ସେ ଗରାକୁ କାଟି ଟେକାଟେକି କରି ସଙ୍ଗାତ ହାତକୁ ଉପରକୁ ବଢ଼େଇ ଦେଲା । ବ୍ରାହ୍ମଣ ପୁଅ ସେ ଗରାଟିକି ପାଇଲାକ୍ଷଣି ଏକଦମ ଦୁଦିଡେଇଲା ।

ସାଧୁତପୁଅ ତ ଖାଟ ଭିତରେ ପଶିଛି, ଖାଟଟା ଗୁରୁ ପ୍ରଭୁଙ୍କ ପାଇଁହାତ ଗଢ଼ା। ତା ଭିତରୁ ପଦାକୁ ଉଠି ଅଇଲା ବେଳକୁ କାଠିକର ପାଠ। ଏଣେ ଚୋରେ ବି ସଙ୍ଗାତମାନଙ୍କ ତ ଲୁଚେଇ କରି ଏ କାମ କରିଛନ୍ତି। ସାଧୁତପୁଅ ସଙ୍ଗାତଙ୍କୁ ଉଦ୍ଗାରି କରି ଡାକୁଚି ଅବା କିମିତ? ଚୋର ଭାଇ, କୌଣସି ପ୍ରକାରେ ସାଧୁତପୁଅ ସେ ଖାଟ ଭିତରୁ ଉପରକୁ ଉଠି ଆସି ଦେଖିଲାବେଳକୁ ସଙ୍ଗାତରେ କିଛି ପତା ନାହିଁ। ବିଗୁଡ଼ିଲା ସଙ୍ଗାତ ମଟେ ହଠାତ୍ ଏ କାଟିଦେଇ ପୋଟମାଲ ଗରାଣ୍ଟ ଘେନି ପଳାଇଗଲା! ଏଣେ ବାହ୍ମଣପୁଅ ଦେଖିଲା ଯେ, ରାତି ଆଉ ବି ଟିକିଏ ଅଛି। କୁଆଡାରାଟା ଧାଉ ଧାଉ ହୋଇ ଜଳୁଛି। ସକାଳ ହେଲେ ତ ମହାଜନ ଘର ମଣିଷ ଉଠି ତାଙ୍କୁ ଅପବାଦ କରିବେ। ତା ବିଗୁରେ ଗଛଟିଙ୍କ କାନ୍ଧରେ ଚଢ଼ି ଏକ ମୁହାଁ ହୋଇ ସେ ଗାଆଁ ଛାଡ଼ି ଚଳେଇଲା। ଯାଉଁ ଯାଉଁ ବି ଟିକେ କୋଶ ବାଟରେ ଗୋଟିଏ ପୋଖରୀ ପଡ଼ିଲା। ସେଇ ପୋଖରୀ କୂଳରେ ରାତି ପାହାର ପାଂଟି ଗଲା। ରାତି ଯାକ କୋଡ଼ି ହାଣିହାଣିକା, ଏଣେ ବୋଟ_ ମୁଣ୍ଡେଇ ବାଟ ଗୁଲିଗୁଲିକା ବାହ୍ମଣପୁଅକୁ ଭାରି କାଧୁ ଯାଇଥାଏ। କି ଅଛି କଲା ନା ବିଗୁଡ଼ିଲା, ମୁଁ ତ ମହାଜନ ଗାଁ ଆରୁ ଏତେ ଦୂରକୁ ବାହାରି ଅଇଲିଣି। ଏଇ ପୋଖରୀ ପାହାଚ ଉପରେ ଦଣ୍ଡେ ଅଲସ ମୋଡ଼ିଦେଇ ନିଏଁ। ଏଇଥ ପାଇଁ କରି ପୋଖରୀର ଗୋଟିଏ କଣକୁ ଯାଇ ଆଣ୍ଠୁଏ ପାଣିରେ ଟେକି ପରାଟିଙ୍କ ପାଙ୍କ ଭିତରେ ମାଡ଼ିଦେଲା, ସେ ପୋଖରୀ ପାହାଚରେ ଗାମୁଛା ଖଣ୍ଡିକ ପାରିଦେଇ ଶୋଇଲା। ଏକେ ତ ସାରା ରାତି ଅନିଦ୍ରା, ଆଉ ଦେହ ମିହନତରେ ଭାରି କାଧୁ ଯାଇଥାଏ। ସେଇକ୍ଷଣି ତାକୁ ଘମାଘୋଟ ନିଦ ମାଡ଼ିଗଲା। ସାଧୁପୁଅ ଏଣେ

ତାହାରୁ ପଦାକୁ ଉଠି ଯିମିତ ଦେଖିଲା ସେ ସଙ୍ଗାତ ମୋଟ ହେଲାଣି , ସେ ତ ପଛେ ପଛେ ଅଶାନ୍ତସ୍ୱାମୀ ହୋଇ ଗଡ଼ିଲା ତ ଦଉଡ଼ ଦଉଡ଼ ଆସି ପୋଖରୀ କୂଳରେ ଦେଖିଲା ବେଳକୁ ସଙ୍ଗାତ ଘୁଙ୍ଗୁଡ଼ି ମାରୁଛି । ପାଖରେ ତ ତାରା ଫଂରା କିଛି ନାହିଁ । ବିଗୁଲା ନିଶ୍ଚେ ସଙ୍ଗାତ ସେ ତାରାକୁ ଏ ପୋଖରୀରେ କୋଉଠି ମାଡ଼ ଦେଉଛି । ଯା ବିଗୁଲ ପୋଖରୀର ତୁଳ କଣ ଯାକ ଉଣ୍ଡିଲା । ଉଣ୍ଡିଲା । ଦେଖିଲା ସେ ସବୁ କଣକୁ ଏ ଗଲା ବେଳକୁ ବେଙ୍ଗ ଗୁଡ଼ାଏ କୂଳରୁ ଖପ୍‌ଖାପ୍ ପାଣିକି ଡେଇଁ ପଡ଼ିଲେ । ଗୋଟିଏ କଣରେ ବେଙ୍ଗ ନାହାନ୍ତି । ସେଇ କଦରେ ଠିଆ ହୋଇ ଅନାଇଁ ଗଲା ବେଳକୁ ଝଣ୍ଡୁନୂରଯାକେ ପାଣି ଅଳ୍ପକେ ଗୋଳିଆ ହେଉଛି । ଏହା ଦେଖି ସେଇ କଣରେ ପଶି ଗୋଡ଼ରେ ଉଣ୍ଡିଲା ବେଳକୁ ଆଣ୍ଠୁଏ ପାଣିରେ ଗୋଡ଼ରେ ତାରାଟି ବାଜିଲା । ଯିମିତି ତାରାକୁ ଉଠେଇଲା ସିମିତି ସଙ୍ଗାତକୁ ନ ଉଠେଇ ତାରାଟି ଧରି ଦେ ଦଉଡ଼ । ଘଡ଼ିଏ ଦି ଘଡ଼ି ବାଦ ବ୍ରାହ୍ମଣପୁଅର ନିଦ ଭାଙ୍ଗିଲା । ନିଦ ମଳମଳ ହୋଇ ଉଠି କାଳେ ପୋଖରୀ ତୁଠକୁ ଲୋକ ଗାଧୋଇବାକୁ ଆସିଲେ ଯାଙ୍କୁ ବାରକଥା ପଚାରିବେ , ବାରକଥା ସୁଦ୍ଧେ କହିବେ , ଯା ଭାବି କିମିତି ବାଟ ପରିବ । ଯା ବିଗୁଲ ସେ ପୋଖରୀ କଣକୁ ଯାଇ ଦଉଣ୍ଡିଲା ବେଳକୁ ତାରା ଫଂରା କିଛି ନାହିଁ ! ଯା ଦେଖି ବିଗୁଲା ଆରେ ! ଏ ତ ନିଶ୍ଚେ ସଙ୍ଗାତର ପାଠ , ମୁଁ ଶୋଇ ପଡ଼ିଲାରୁ ସଙ୍ଗାତ ଆସି ତାରାଟିକି ଉଣ୍ଡି ନେଇ ଚଲ ଦେଲାଣି । ଯା ବିଗୁର ପାଙ୍କଲଗା ପାଦି ଚିହ୍ନକୁ ଦେଖି କରିକରିକା ସଙ୍ଗାତରେ ଯିବା ଉଇଲା । ଝଣ୍ଡୁନୂର ବାଟ ଯାଇଛି ଦେଖିଲାବେଳକୁ ସଙ୍ଗାତ ମୁଣ୍ଡରେ ତାରାକୁ ମୁଣ୍ଡେଇ ଲମ୍ବର ପାହର ହୋଇ ବଢ଼ୁଛି । ସେଇଥିରୁ ବ୍ରାହ୍ମଣପୁଅ ଡାକ ପକାଇଲା , ହେ ସଙ୍ଗାତ । ଯାହା

ତ ହେବାର ହେଲାଣି । ଆଉ ଦିନେ ରାଜା ସେ ମାଳମାନଙ୍କ ବାଛି କରି ନେବା । ସାଧୁତ ପୁଅ ତ ଏତେ ବେଳକୁ ବୋଧେ ମୁଣ୍ଡରେ ଦଉଡ଼ି ଦଉଡ଼ି ଥକି ଗଲାଣି, ସମ୍ରାଟ ମନ କଥା ଶୁଣି ଥମ୍ବି ଗଲା । ଦିନେ ରାଜା ସେଠାରେ ବସିଲେ । ସେଠାରେ ଗୋଟିଏ ଅମୁହାଁ କୂଅଟିଏ ଥିଲା, ଯେ କୂଅମୁହଁରେ ଗୁଡ଼ାଏ ଗଛଲଟା ମାଡ଼ିଛି । ସେ କୂଅରୁ ଆଉ କେହି ପାଣି ଏବେକୁ ନେଉ ନାହାନ୍ତି । ସେଠାରେ ଭାରି ଝାଟିଆ ହୋଇଛି । ବ୍ରାହ୍ମଣ ପୁଅ ଗୋଟିଏ ବୁଦ୍ଧି ପାଇଁଲା, କହିଲା, ହେ ସମ୍ରାଟ ! ରାଜନାକ ମିହନ୍ କରି ଚାଲି-ଚାଲିକା ମୋ ହଂସା ଉଡ଼ିଗଲାଣି, ମୁନ୍ଦଏ ପାଣି ପିଅନ୍ତେଇଁ । ମହାଜନ ପୁଅକୁ ବି ଭାରୀ ଶୋଷ କରୁଥାଏ । ଅପାନ୍ତରା ଗହୀର ଭିତରେ ଏବେ କୋଉଁଠୁ ପାଣି କି ମାଠିଆ, କି କୂଅପହଡ଼ି ମିଳୁଛି ? ବ୍ରାହ୍ମଣପୁଅ କହିଲା ସମ୍ରାଟ ! ଏ ମାଳକଙ୍କ ଗରାରୁ ତଳେ ଅନାଇବା । ତୁମ ଗାମୁଛା ଆଉ ମୋ ଗାମୁଛାକୁ ଗଣ୍ଠିରେ କରି ଏ ଗରାରେ ଏ କୂଅରୁ ପାଣି କାଢ଼ିବା ପିଇବା, ପେଂର ମାଳଙ୍କେ ଗରାରେ ଭରି ଦେଇ ଆମ ଦେଶକୁ ଯିବା । ସେଠାରେ ବାଛି କରି ନେବା । ସାଧୁତ ପୁଅ ତ ଏତେ କଥାର ସନ୍ଧି ନ ଜାଣେ । ସେ ସେଇଆ କଲା । ଯିମିତି ଗରାମୁହଁରେ ଗାମୁଛା ବାନ୍ଧି କୂଅ ପାଂଦ ପାଖାକୁ ଯାଇ କୂଅକୁ ଗରା ପକେଇଛି, ବ୍ରାହ୍ମଣପୁଅ କଅଣ କଲା ନା ପଛୁ ଆଡ଼ୁ ଯାଇ ସମ୍ରାଟଙ୍କୁ ପେଲି ଦେଲା ଯେ, ସମ୍ରାଟ ମୁହଁ ମାଡ଼ି ହୋଇ ସେ ଅମୁହାଁ କୂଅ ଭିତରକୁ ଗଳି ପଡ଼ିଲା । ବ୍ରାହ୍ମଣ ପୁଅ ସେ ମନୁଡ଼ି, ଅସରପି, ହୀରା, ମୋତି, ମାଣିକମାନଙ୍କ ସାଉଁଟି କରି ଆପଣା କାନ୍ଧରେ ବାନ୍ଧିଲା । କଥାରେ ଅଛି— ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ । ମହାପ୍ରଭୁ ଯାହାକୁ ଯିଶୁ ଯୋଡ଼େଇ

କରି ରଖିବେ, ତା'ର ତ ଅଣ ଗୋଡ଼ରେ କଣ୍ଟା ବାଜିବ ନାହିଁ; ସେ ତ ବାଘ ପରା ଜନ୍ମ ମୁହୂର୍ତ୍ତ ବରଞ୍ଚ କରି ଆସିବ ବାହାରି। ସାଧୁତପୁଅଙ୍କୁ ସଙ୍ଗାତ ଘେନି ଦେଲା ବେଳକୁ ସେ କୂଅ ଭିତରେ ନଦ ମଝିରେ ଗୋଟିଏ ବର ଓସ୍ତ ଗଛ ଉଠିଛି ସେ ମହାଜନପୁଅ ଏକ୍‌ଦମ୍ ରସାତଳରେ ନ ପଡ଼ି ସେହି ବର ଓସ୍ତ ଗଛ ଡାଳରେ ଅଧବାଟରେ ଲାଖି ରହିଲା। ସେଠୁଁ ଉପରକୁ ଉଠୁଚି କା କମିତ? ସେଇଠି ଗୋଟିଏ ଡାଳ ଶାଖା ଉପରେ ବସିଥାଏ। ଏହି ସମୟରେ ସପାଂ ପାରସ୍ତ ହୋଇଗଲା। କୂଅର ମୁହଁ ପାଖ ପର୍ଯ୍ୟନ୍ତ ଦିଶୁଥାଏ। କୂଅ ଗମ୍ଭୀର ଭିତରେ କଟିକଟିଆ ଅନ୍ଧାର। ସାଧୁତପୁଅ ସେଠେଇଁ ଅନ୍ଧାରରେ ବସିଥାଏ ଝୁରୁଥାଏ, ଦିନ ହେଲେ, ଯାହା ଭିତରୁ କେଉଁଅନନ୍ଦ ପରିପରକା ଉପରକୁ ଉଠିବ, ଦେଖିଶି ଆଉ ଲୋକ ପାଇଁ କରିବ। ଏଣେ କଅଣ ହୋଇଛି ନା' ସେ କୂଅ ଭିତର ବରଗଛରେ ଗୋଟିଏ ଡାହାଣୀ ଆଉ ଓସ୍ତ ଗଛରେ ଗୋଟିଏ ପିତାଶୁଣୀଙ୍କ ବସା। ସେ ରାତିମାନ ପାପାଙ୍କୁ ବାହାରି ଚରି ବୁଲି ଯାଆନ୍ତି। ସକାଳ ହେଲାରୁ ଫେରି ଆସି ସେ କୂଅ ଭିତରେ ବର ଓସ୍ତ ଗଛରେ ବିଶ୍ରାମ କରି ରହନ୍ତି। ଫେର୍ ସନ୍ଧ୍ୟା ହେଲାରୁ ବାହାରନ୍ତି। ସେ ଦିହେଁ ବି ଭଉଣୀ। ନିତି ପ୍ରତିଦିନ ଏମିତି କରନ୍ତି। ସେ ରାତିରେ କୁଆଡ଼େ ଚରି ବୁଲି ଯାଇଥିଲେ, ସକାଳକୁ ଆସି ବସାରେ ପହଞ୍ଚିଗଲେ। ଏ ସାଧୁତପୁଅ ତ ଗଛ ଗଣ୍ଡି ପାଖ ଟିକିନା ଜାଗାରେ ବସିଛି। କୂଅଭିତରେ ତ ନିଗିଦ ଅନ୍ଧାରୁଆ ହୋଇଛି। ଯାହା ଭିତରେ ଏତେ ଏତେ କଥା ହୋଇଛି ବୋଲି ଏ ଦି ଭଉଣୀମାନ ଆଉ ଜାଣି ପାରିଲେ ନାହିଁ। ଆପଣା ବସାରେ ଯାଇ ପଶିଗଲେ। ଡାହାଣୀ ପଚାରିଲା, ନାନୀ ଲୋ! ଦିନ ଆଉ ଖବର କଅଣ? ପିତାଶୁଣୀ ପଚାରିଲା, ଭଉଣୀ, ଲୋ!

ମୁଲକର ହାଲ କଅଣ ? ଇମିତି ପଚରା ପଚରି ହୋଇ ଦି ଭଉଣୀ ଦୁଃଖୋନ୍ମୁଖ ହେଲେ । ଡାହାଣୀ କହିଲା, ମୁଁ ଆଠ ଦିନ ହେଲା ଏ ମୁଲକର ରଜାଟିଅକୁ ଲାଗିଛି ଯେ ତାକୁ ଚିପିଚୁପି କରି ଖାଇଦି, ତେବେ ଯାଇ ମୋ ପେଟ ପୂରିବ । ରଜା କେତେ ମୁଲକରୁ କେତେ ଗୁଣିଆ ଗାରଡ଼ିଆ ଅଣେଇଲେଣି ଯେ, ଜେମାଏଁ ମତେ ଆଉ କେହି ଛୁଡ଼େଇ ପାରୁନାହାନ୍ତି । ଆଉ ଛଅଦିନେ ଜେମା ତ ମଲେ ଶୁଖିଶାକୀ ମରିସିବ । ମୁଁ ତ କେତେ ଦିନ ମୋ ପେଟକୁ ଭରି କଅଁଳିଆ ଆହାରଟିଏ ପାଇଛି । ମୁଁ କି ସେ କଅଁଳ ମାଉଁସକୁ ଛାଡ଼ିବି ? ମୋ ଉତ୍ତାର କିଏ ଜାଣିବ ଯେ, ମତେ ଜେମାଠୁଁ ଛଡ଼ାଇବ ? ପିତାଶୁଣୀ ପଚାରିଲା, ଆଚ୍ଛା ଭଲା ଏଥିକି କିଛି ଉତ୍ତାର ନାହିଁ ? ଡାହାଣୀ କହିଲା, ଅଛି ଯେ, ସେ କଥା ଜାଣୁଛି କିଏ ? ଏ ଯୋଉଁ ଗଛରେ ମୁଁ ବସା କରିଛି ଏହି ଗଛରୁ ତିନୋଟି ପତ୍ର ନେଇ, ମଳି କରି ଯେବେ କିଏ ସେ ସେ ରଜାଟିଅକୁ ଶୁଙ୍ଘେଇ ଦିଅନ୍ତ, ତେବେ ମୁଁ ଜେମାକୁ ଛାଡ଼ିଚୁଡ଼ି ଦେଇ ପଳାନ୍ତି । ହେଲେ ସତରେ ଯା କିଏ କରିବ ଯେ, ଜେମା ମୋ ମୁହଁରୁ ବର୍ତ୍ତିବ ? ସାଧୁତପୁଅ ଜୁନୀ ହୋଇ ଏ କଥା ଶୁଣୁଥାଏ । ପିତାଶୁଣୀ କହିଲା, ରଜା ନଅର ପାଖ ବେଣାପୋଖରୀ ହୁଡ଼ା ତଳେ କିଛି ଯଖଙ୍କ ମାଲମତା ଅଛି । କାଲେ ତାକୁ କିଏ ନେଇସିବ ବୋଲି ମୁଁ ତ ରାତି ଯାକ ସେଠିରେଁ ଯାଇ ଜଗି ବସିଥାଏଁ । କିଏ ସେ ମାଲମତାର ପତା ପାଇବ ଯେ ତାକୁ ଖୋଳି କରି ନବ ? ଡାହାଣୀ ପଚାରିଲା, ତାକୁ କଅଣ ନବାର କିଛି ଉପାୟ ନାହିଁ ? ପିତାଶୁଣୀ କହିଲା, ମୁଁ ଏ ଯୋଉଁ ଗଛରେ ବସା କରିଛି, ଏ ଗଛର ମୁଣ୍ଡା ଆଗଡାଳ ଯେତେ ଯେବେ କିଏ ନେଇ ସେଇଥିରେ ଖଣତି ବେଣ୍ଟ କରି, ସେହି ପୋଖରୀହୁଡ଼ା

ଉପର ବରଗଛ ଶିଅ ତଳେ ଗ୍ରହଣ ଦିନ ରାତିରେ ସେ ଝାଟରେ ଖୋଳନ୍ତି, ତେବେ ସେ ମାଲିକ ବାହାର କରନ୍ତି । ତା'ର ଅଚଳାଚଳ ସମ୍ପତ୍ତି, ଧନ ଜନ ଗୋପାଲକ୍ଷ୍ମୀ ମାଡ଼ି ଯାଆନ୍ତି ପରା । ଏ ସୂତ୍ର କାହିଁ ମାନବ ଜାଣିବ ଯେ ସେ ଯାଇ ଧନକୁ ନବ? ସାଧୁତପୁଅ ତ ଏ କଥା ସବୁ କାନପାରି ଭଲ ହେଇ ଶୁଣୁଥାଏ । ଏମିତି କଥାଭାଷା ହେଉ ହେଉ କି ଭଉଣୀମାନେ ସେ ଜାଗାରେ ଛପେଇ ଗଲେ । ଡାହାଣୀ, ଚିରଗୁଣୀ, ପୀତାଶୁଣୀ, ଶାଙ୍ଖୁନୀ, ଭୂତ, ପ୍ରେତ, ବ୍ରହ୍ମରାକ୍ଷସ, ଏ ସମସ୍ତେ ତ ରାତିମାନଙ୍କ ଅଧିଦସ୍ତପାର୍ଟ ଭଳିଆ ବୁଲୁଥାନ୍ତି, ସେମାନଙ୍କର ସବୁ ରାତିରେ ଯାଲକ ପଡ଼େ ନାହିଁ । ଏ ସମସ୍ତେ ଦିନରେ ଶୁଅନ୍ତି, ରାତିରେ ଚରନ୍ତି ବୁଲନ୍ତି । ଯିମିତି ଏ କି ଭଉଣୀମାନେ ଶୋଇ ପଡ଼ି ଯିମିତି ଘୁଙ୍ଗୁଡ଼ି ମାରିଲେ, ସାଧୁତପୁଅ କଅଣ କଲା ନା, ଯିମିତି ସୂର୍ଯ୍ୟଦେବତା ମୁଣ୍ଡ ଉପରକୁ ଆସିଲେ, ଉନ୍ଦୁରଦିଆ କି ପାହାର ବେଲକୁ ସେ କଅ ଭିତରେ ଝରାରେ ହାଲୋଲ୍‌-ମାଲୁ ହୋଇଗଲା । ଡାହାଣୀ ପିଚାଶୁଣୀ ତ ନିଘାମ ନିଦରେ ଶୋଇଛନ୍ତି । ସାଧୁତପୁଅ ଧୀରା ଧୀରା ସେ କଅନଳକୁ ଧରି ଧରିକା ହାତ ଗୋଡ଼, ବାହା, କହୁଣୀରେ ଚେଁଗ ଦେଇ ଦେଇକା ଉପରକୁ ଉଠିଲା । ଉଠିକରି ଡାହାଣୀର ବଷା ଯୋଡ଼ି ଗଛରେ ସେ ବରଗଛ ଅଗରୁ ତିନୋଟି କଅଁଳିଆ ପତ୍ର କାନିରେ ବାନ୍ଧିଲା । ଖେଣ୍ଟ ଦୂର ଆସିଛି, ବାଟୋଇଙ୍କି ଦେଖି ପଗୁରିଲା, ମଉସା ! ଏ ରାଇଜ ରଜାଙ୍କ ନଅରକୁ ବାଟ କିଏ ! ବାଟୋଇ ତାକୁ ବାଟ ବତେଇ ଦେଲେ । ଲୋକେ ତ ପଗୁରି ପଚାରି ଡେଙ୍କାକୁ ଯାଉଛନ୍ତି । ସେ ରଜାଙ୍କ ସିଂହ ଦୁଆରେ ଯାଇ ପହଞ୍ଚିଲା । ରଜାଙ୍କ ଜେମାଙ୍କୁ ଡାହାଣୀ ଲାଗିଛି ସେ ଜେମାଦେଈ ନ ଖାଇ ନ ପିଇ କଣ୍ଢା ରହିଲାଣି । ହାଡ଼

ମାଂସ ହୋଇ ସଫଳ ହୁଏ କି ନ ହୁଏ ! ସମସ୍ତେ ଆଶା ଛାଡ଼ି ବସିଲେଣି । କେତେ ଗୁଣିଆ, କେତେ ଓଝା ଆସି କେତେ ଝଡ଼ାଝଡ଼ି, ଫୁଙ୍କାଫୁଙ୍କି, ଧୂପ, ବଳି, ଜୋଡା, ମନ୍ତ୍ରତନ୍ତ୍ର କରି କରି ଥକି ଗଲେଣି । ସେ କାହାଣୀ ଆଉ ଶୁଣିବାକୁ ନାହିଁ । ଜେମା ତ ବାପ ମା'ଙ୍କର ଏକୋଇର ଜଳା । ଭାରି ଗେଲବସରରେ ବଢ଼ିଛି । ସବୁଙ୍କୁ ରାଣୀ କହିଲେ — ଯେ ମୋ ଜେମାଦେଈଠାରୁ କାହାଣୀ ଛଡ଼େଇ ଦେବ ତାକୁ ମୋ ଜେମାକୁ ବିଭା କରେଇ ଦେବି । ରଜା କହିଲେଣି, ତାକୁ ରାଇଜରୁ ଅଧେ ତମ୍ବାପାତିଆ ସନନ୍ଦ କରି ଦେବି, ଉତ୍ତମ ସୁନ୍ଦର ନଅର ତିଆରି ତୋଳେଇଦେବି । କେତେ କେତେ ବୁଣି ଚାଟେଡ଼ି ଆସି ତାଙ୍କ ମୁହଁମାନ କେଶରା ପାଡ଼ି ଫେରି ଗଲେଣି । ଦିନକୁ ଦିନ ଜେମା ଦିହ ବଳେଇଲାଣି । ସମସ୍ତେ ମୁଣ୍ଡରେ ହାତ ଦେଇ ବସିଛନ୍ତି । ନଅରରେ ଉଛବ ଆନନ୍ଦ କିଛି ନାହିଁ । ଯୋଉଠିଇଁ ମାଛି ପଡ଼ିଲେ ନବଖଣ୍ଡ ହଉଥିଲା, ଆଜି ସେଠିଇଁ ମାଛି ମାରୁଛନ୍ତି । ରଜା ରାଣୀ ତ ଚିନ୍ତାରେ ଚରଣ ଛାଡ଼ି ଦେଇ ସାରିଲେଣି । ଏଇ ସମୟରେ ଏ ସାଧୁପୁଅ ମହଲ ମେଲେଛି ଅ ହୋଇଛି, ଯାଇ ପହଞ୍ଚିଲା ରଜାଙ୍କ ସିଂହ ଦୁଆରେ । ଯାହା ମୁହଁରୁ ଶୁଣୁଛି, ସେହି ଜେମାଙ୍କର କାହାଣୀ ଗପ କଥା । ସାଧୁପୁଅ ଯାଇ ଦୁଆରି ଜଗା ପାଇକଙ୍କୁ କହିଲା, ମୁଁ ଟିକିଏ ଜେମାଙ୍କୁ ଦେଖନ୍ତି । ସମସ୍ତେ, ଯା ରୂପ, ଯା ଭେକ ଦେଖି ଯାକୁ ଠିକରେ ଉଡ଼େଇ ଦେଲେ, ଯା କଥାକୁ ପାସଙ୍ଗରେ ପକେଇଲେ ନାହିଁ । କହିଲେ, ବଡ଼ ବଡ଼ ଗଲେଣି ପଂଝର ଫାଟି, ସାନ ସାନ ଅଇଲେ ବେସର କାଟି ! ଶିଳ ଶିଳୁପାଟା ଗଗନରେ ଉଡୁଛନ୍ତି, ଶିମିଳି ତୂଳା ବୋଲୁଛି ମତେ

ରଖ୍ । ପଟୁକୁ ମଣିମାଙ୍କ ଉଆସରେ ଏ ଟୋକା ଆସିବା ଖବର କିମିତି ଯାଇ ବାଜିଲା । ମାଆ ତ ପେଟ ଟିଏ ପିଲା ଜନମ କରିଚି, ତା ମନ କି ସହଜରେ ବୁଝେ ? ରାଣୀ କହିଲେ, ଦେଖିବା ଦେଖି, କେଜାଣି ଅବା ମୋ କରମକୁ ମହାପ୍ରଭୁ ଏ । ମଣିଷକୁ ଆଣି ପଠେଇଛନ୍ତି ? ସ୍ତ୍ରୀ କହି ସାଧବପୁଅକୁ ଉଆସ ଭିତରକୁ ଡ଼କେଇ ନେଲେ । ଜେମା ପାଖକୁ ସ୍ତ୍ରୀକୁ ନେଲେ । ଏ କାନରୁ ସେ ଜରପତ୍ର ଛଡୋଟି ଫିଟେଇ ମାକଡ଼ ଦେଇ ଯିମିତି ଜେମା ନାକ ପାଖକୁ ନେଇଛି ଜେମା ଝିମିତି ଅବଟରେ ଉଠିଲା, କହିଲା, ମତେ ଖଟ ଛାଡ଼, ମୁଂ ଯିବି । ଗୋଟାଏ ପାଣିପୂରା ଗରାଟାଏ ଆଣି ଜେମା ଆଗରେ ଥୋଇଦେଲେ । ଜେମା ସେ ଗରା ଫମ୍ପକୁ ଦାନ୍ତରେ କାମୁଡ଼ି ଅଣ ଉଠେଇ ନେଇ ଖଟିଆ ମୁଣ୍ଡକୁ ଯାଏଁ ଯାଏଁ ପଡ଼ିଗଲା । ସ୍ତ୍ରୀ ଦେଖି ସମସ୍ତେ କାବାଭୁଡ଼ । ସେତେବେଳେ ଗରାକୁ କଟୁଡ଼ି ଦେଇ ଜେମା ଢୋଇ ଗଲା । ପୋଇଲୀ ପରିବାରୀ ଜେମାକୁ ସ୍ନାନ କଲେ । ଆଉଁଶା ଘଷା, ଚିପିଁ, କହିଁ କଲେ । ଜେମା ଠେଇଁ ଚେତା ପଶିଲା । ଦେଖିଲା ଦେଲକୁ ସତକୁ ସତ ଟାଣ୍ଡିଟୁଣ୍ଡି ହୋଇ ବସିଲା, ଜେମା ଠେଇଁ ଯାହାଣୀ ଛାଡ଼ିଗଲା । ରାଜାମାନଙ୍କ ଆନନ୍ଦ ଉଛୁଳ ଲାଗିଲା । ସେଠେଇଁ ସାଧବ ପୁଅକୁ ରଜା ବେଣ୍ଟୁ ପୋଷରୀ ହୁଡ଼ା ପାଖରେ ଦିବ୍ୟ ସୁନ୍ଦର ବଟଣୀବସ୍ତୁଆ ଉଆସ ତୋଳେଇ ଦେଲେ । ଦିନ କେତୋଟାରେ ଜେମା ଟାଣ୍ଡି ଟୁଣ୍ଡି ହୋଇ ତାଜା ହେଲା । ଫେର୍ ଜେମାର ସୁନ୍ଦର ରୂପ ଫୁଟି ଉଠିଲା । ଏ ଟୋକାକୁ ଜେମାକୁ ବିଭା କରେଇ ଦେଲେ । ରାଇଜମାନଙ୍କ କେତେ ଉଛୁଳ, କେତେ ନାଟରଙ୍ଗ ଲାଗିଲା, ରଜା ଆନନ୍ଦରେ ହାଟ ଜୁର କରେଇଲେ, ବାଟ ଜୁର କରେଇଲେ, ଭଣ୍ଡାର ଜୁର କରେଇଲେ, ନଅର ଘର

ଚତୁରଙ୍ଗ ବଳ ସହିତେଁ ଆନନ୍ଦରେ ସାତମଙ୍ଗଳା ଯାକେ ମାତିଲେ । ଯାତ୍ରା ପାଲା , ରାମଲୀଳା , କାଠପୁତୁଲୀଲା , ଭାରତଲୀଳା , ଗୋପଲୀଳା ଇମିତି କେତେ ନାଟରଙ୍ଗ କଲେ , ଜେମା ଆଉ ଏ ଟୋକା ଯାଇ ସେ ନୂଆ ନଅରରେ ରହିଲେ । ଦିନାକେତେ ଗଲାରୁ ଏ ଟୋକା ଖଣ୍ଡାରେ ଯାଇ ସେ ଅମୃତ କୁଅ ଭିତରେ ଓଳ୍ଗାରୁ ଆଗ ପଲଖଣ୍ଡି ଆଣି ତାକୁ ତାହିଁ ବୁହିଁ କରି ଗୋଟିଏ ଖଟିଆ ତେଣୁ କରି ସେଥିରେ ଖଣ୍ଡିଏ ଖଟାଟ ଲଗାଇ ସାଇତି କରି ରଖିଥାଏ । ଦୈବଯୋଗ ତ । ମାସେ ଖଣ୍ଡେ ଗଲାରୁ ଗ୍ରହଣ ପଡ଼ିଲା । ଏ ଟୋକା ସେହି ଗ୍ରହଣଦିନ ରାତିରେ ଜନୀ ପାନୀ ହୋଇ ଯାଇ ରଜାଙ୍କ ତେଣୁ ପୋଖରୀ ଭୂଇଁ ଉପରେ ସେଇଁ ବରଗଛ ଥିଲା ; ସେ ବରଗଛର ଶିଅ ଡଳ ସେ ଖଟାଇରେ ଖୋଳିଲା ବେଳକୁ ସତକୁ ସତ ହୀରା , ନୀଳା , ମୋତି , ମାଣିକ , ସୁନା , ରୁପା , ପଦାକୁ ପଦା ସେଠେଇଁ ସେ ଶିଅ ଡଳ ଖୋଲରେ ଭରା ହୋଇଛି । ସେଇଥିରୁ ରାତି ଯାକ ଟୋରସି, ଭାଉନା ସେତକ କାନ୍ଧ କାନ୍ଧ କରି ଅଣ୍ଟୁ ଅଣ୍ଟୁ କରି ବୋହି ଲାଗିଲେ । ସବୁ ଧନ ଦରବ ଯାକ ଆଣି ଆପଣା ନହରରେ ଗୋପ୍ୟାନି କରି ରଖିଲେ , ରାତିକାରାତି ସେ ଶିଅଡଳ ଗାତକୁ ପୋତି ପକେଇଲେ , ରହିଲେ । ସତକୁ ସତ ପିତାଶୁଣୀ ଯାହା କହିଥିଲା , ସେଇଆ ହେଲା ଏ ନୂଆ ନହରରେ ଗୁହୁଁ ଗୁହୁଁ ଧନ ଦଉଲତ ଘରକୁ ଘର ତୁଟା ମାଡ଼ି ଗଲା । ସାଧୁତ ଟୋକା ପେଂର୍ ସମୁଦ୍ର କୂଳରେ ହାଡ଼ଆ ଖାଇବ ବୋଲି ଗୋଟାଏ ଛନମହଲା ହମ୍ମାନ୍, ନଅର ତୋଳେଇଲା । ଶାସ୍ତ୍ର ରଜା ଯା ଦେଖି ଆଚମ୍ବିତ ହଉଥାଆନ୍ତି । ହେଲେ, ଟିଅ ଜୋଇଁଙ୍କର ବଢ଼ତି ଦେଖି କିଏ ଅବା ଆନନ୍ଦ ନ ହବ ଯେ ? ଏ ସାଧୁତ

-୧୦୪ -

ଟୋକା ବିଗୁଡ଼ିଲା ଯେ ସଙ୍ଗାତ ମୋତେ ଅମୃତାଂ କୁଆକୁ ଘେନି
ଦେଇଥିଲେ ବୋଲି ମୁଁ ସିନା ପରମ ସୁନ୍ଦର ଜନ୍ମ ଭୂଆ
ହେଲି, ଆଜି ଏବେ ଅମୃତାର ଧନ ଦଉଲତ ପାଇଲି ।
ସଙ୍ଗାତଙ୍କ ଉପକାର ମୁଁ ସାତ ଜନମରେ ଶୁଝି ପାରିବି ନାହିଁ ।
ସଙ୍ଗାତଙ୍କୁ ଦେଖନ୍ତି କି, ତାଙ୍କୁ ଘରା ପାଦପୂଜା କରି ଏଠେ
ହିଆନ୍ତି । ନୁ ବିଚୁରୀ ସବୁବେଳେ ସଙ୍ଗାତଙ୍କୁ ସୁମରଣା କରୁଥାଏ ।
ଦୈବ ଘଟସୂତ୍ର ତ ! ଦିନାକେତେ ଯାଉଛି, ସଙ୍ଗାତ ଆସି ଏ
ଟୋକା ପାଖରେ ହାଜର । ତେଣେ କଅଣ ହୋଇଥାଏ ନା,
ବାହ୍ମଣ ଟୋକା ସାଥିତ ଟୋକାକୁ ଅମୃତାଂ କୁଆ ଭିତରକୁ
ଘଚୁମୃତାଂ କରି ପେଲି ଦେଇ ମାଲମତାକ ନେଇ ପଳେଇ
ଗଲା, ଯେ ବିଗୁଡ଼ିଲା ଟୋ ସଙ୍ଗାତ ଅମୃତାଂ କୁଅରୁ ସତେ
ଉଠିକ ନାଁ ମତେ ଆଜି ଭେଟିବ ? ନ୍ଧା ବିଗୁଡ଼ି ସେ
ମାଲତକ ନେଇ ବେପାର ବଣିଜ କଲା, ବୋଇତ ସାତଖଣ୍ଡ
କରି ସାତ ସମୁଦ୍ର ଲଙ୍କା ପାରି ହୋଇ କେତେ ମୁଲକ
ବୁଲିଲା, ସାତଖଣ୍ଡ ବୋଇତରେ କେତେ ଅପୁରୁବ ଚିଜ ଆଣି
ଆପଣା ରାଇଜକୁ ଫେରିଲା ବେଳକୁ, ଯୋଗ ତ, ତା
କରମକୁ ଦରିଆ ମଝିରେ ବତ୍ୟାର ଉଠେଇଲା ଟୋ ସେ
ସାତଖଣ୍ଡଯାକ ବୋଇତ ଟୁକୁଟାକୁ ହୋଇ ବୁଡ଼ିଗଲା ।
ନାହୁରିଯାକ ସମସ୍ତେ ପାଣିରେ ଉବେଇ ଟୁବେଇ ହୋଇ
ଗୋଟିକଠୁଂ ମଲେ, ଏ ବାହ୍ମଣ ଟୋକାର ତ ଆଉଷ
ପୂରି ନାହିଁ, ଏ କାହିଁକି ମରୁଛି ଅବା ? ନ୍ଧା କପାଳରେ
ତ ଆହୁରି କେତେ ଅନେକ ଅବସ୍ଥା ଯୋଗ ଅଛି । ଏ ଟୋକା
ଖଣ୍ଡିଏ ଭଙ୍ଗାଂପଟାକୁ ଆସ୍ରା ପରାଡ଼ି ଧରି ଭାସି ଭାସିକା
ଆସି ଏଇ ସାଥିତ ଟୋକାର ନୂଆ ନହରଯାଏ ସମୁଦ୍ର
କୂଳରେ ଲାଗିଲା, ସେଠିକିବେଳକୁ ରଜା ନେମା ତ ମହଲା

କୋଠା ଉପରେ ଟହଲ କରୁଥିଲା । ସମୁଦ୍ରର ଅଣ୍ଟେ ସେ ନଦୀର ଠେଇଁକି ପାଖ । ଏ ବାହ୍ମଣୀ ଟୋକାକୁ ଲମ୍ବା ଆଣି କଢ଼ଲରେ ଫିଙ୍ଗିଦେଲା ବେଳକୁ ଏ ଜେମାର ଆଖି ପଡ଼ିଗଲା, ଦେଖିଲା ଯେ ଗୋଟିଏ ମଣିଷ ଉବୁଲଗାଂଳା ହୋଇ ଅତଡ଼ରେ ପଡ଼ି ଛୁକ୍ ଛୁକ୍ ହଉଛି, ଜୀବ ଅଛି କି ଗଲାଣି, ଘୁ ବି ଠହର ପଡୁନାହିଁ । ଏ ଜେମା ସେଇଖିଣିକା ଯାଇ ଗୋରସ୍ତକୁ କହିଲାରୁ ସାଧବ ଟୋକା ଯାଇ ସମୁଦ୍ର ଅତଡାରେ ଦେଖିଲା ବେଳକୁ ଚିହ୍ନିଲା, ଏ ତ ମୋ ସଙ୍ଗାଂତ ! ସେତେବେଳକୁ ସଙ୍ଗାଂତଙ୍କର ପେଟର ହଣ୍ଡା ଉନକାଣୀ । ସେ ତ ହୋଇ ଯାଇଥିଲା ଏ ସାଧବ ଟୋକା ତାକୁ ଲୁଗା ପିନ୍ଧେଇଲା, ଲୋକବାକ ମଝିରେ ହେବେଇ ବାହ୍ମଣୀ ପୁଅର କାନ ଫୁଙ୍କିଲେ, ତାକୁ ସାଙ୍ଗୁ କଲେ, ନଦୀର ଉପରକୁ ଉଠେଇ ଆଣିଲେ । ତା ପେଟରୁ ଲୁଣି ପାଣି ଲାଗି ନାଠୀ ହୋଇଯାଇଥିଏ ତାକୁ ବରକୋଳି କାଠ ନିଆଁ କରି ସେକାସେକି କଲେ, ଘୋଷାଘୋଷି କଲେ ଘିଅ କଉଡ଼ି, ଶୁଣ୍ଠି ପିପଳୀ ଇମିତି କେତେ ଓଷଦ ମାଗଣଦ ତାକୁ ଖୋଇଲେ, ତା ପିଟା ଘଡ଼ିଏ ପାହୁରେ ନିହନ୍ତୁ କଲାରୁ ତା ପେଟରେ ଓଷଦ ମାଗଣଦ, ଆଥାର ପଶିବାରୁ ବାହ୍ମଣ ଟୋକାର ଚେତ ହେଲା । ଦି ସଙ୍ଗାଂତ ଯାକ ଚିହ୍ନା ଚିହ୍ନି ହେଲେ, ଦିହେଁ ଯାକ କୁଣ୍ଡିଆ କୁଣ୍ଡେଇ ହୋଇ କେତେ କାନ୍ଦାକଟା କଲେ । ଦିହେଁ ରହିଲେ । ସାଧବ ଟୋକା ସେଇଥିରୁ ଆପଣା ହାଲହୁଇକତ ଯାକ କହିଦେଇଁ ଶିରା ପର୍ଯ୍ୟନ୍ତ, ସବୁ ବାହ୍ମଣ ଟୋକାକୁ କହିଲା । ବାହ୍ମଣ ଟୋକା ବି ଆପଣାର ଅନକ ଅବସ୍ଥା ଯାକ ସାଧବ ଟୋକାକୁ କହିଲା, ଦିହେଁ ଯାକ ଦିନାକେତେ ସୁଖରେ ସେ ନଦୀରରେ ରହିଲେ । କଥାରେ କହନ୍ତି, ପ୍ରକୃତି ମାଲେ ଦୁଟେ । ଏ ସାଧବ ଟୋକାର

ଏତେ ବଡ଼ଟି ଦେଖି ଏ ବ୍ରାହ୍ମଣ ଟୋକାର ବଡ଼ ଦୁଃଖ ହେଲେଇ ଖିଆଲ ହେଉଥାଏ, ମୁହେଁ ମୁହେଁ ସିନା ସାଙ୍ଗାତ ବୋଲି କହୁଥାଏ ହେଲେ ଭିତରେ ହିଂସାରେ ଜଳିପୋଡ଼ି ଯାଉଥାଏ । ବାହ୍ମଣପୁଅକୁ ତ ଏ ସାଧୁତ ଟୋକା ସେ ଅମୁହାଁ କୂଅ ଭିତରେ ବରଓସ୍ତ ଗଛ ଆଉ ତା ଭିତରେ ବିଶ୍ରାମ ଥିବା ସେ ଡାହାଣୀ ପିତାଶୁଣୀ କଥାକୁ ଟିକିକରେଁ ନଶ୍ୟକମାନେ କହୁଥାଏ । ବ୍ରାହ୍ମଣ ଟୋକା ଭାବୁଥିଲା, ମୁଁ ସେ କୂଅ ଭିତରେ ଯାଇଁ ପଡ଼ନ୍ତି କି, ସାଙ୍ଗାତ ଭଳିଆ ଧନ ଦରବ ଗୁଡାଏ ପାଇ ଯାଆନ୍ତି ; ସାଙ୍ଗାତ ପରି ଇମିତି ନହର ଘର ତୋଳେଇ ଗୋଟିଏ ଦିବ୍ୟ ସୁନ୍ଦର ତରୀଲା ଝିଅ ହୋଇ କେତେ ଅନ୍ୟସରେ ରହନ୍ତି । ଯା ମନେ ମନେ ଭାବୁଥିଲା ସାଙ୍ଗାତ କୋଳରେଇଁ ସେ ଦେଶୁଲଗା ଖଣ୍ଡ ଖଣ୍ଡିକ ରଖିଥିଲା , ତାକୁ ଖୋଜାଖୋଜିରେ ସାଙ୍ଗାତରେଇଁ କଥା ନେଇ ଓର ଉଣ୍ଡୁଲା । ଦିନେ ସାଙ୍ଗାତକୁ କି କାହାରିକି ନ କହି ରାତିରୁ ଉଠି ସେ ଖଣ୍ଡ ଖଣ୍ଡିକ ନେଇ ଚାଲିଗଲା , ଯାଇକରି ସେ ଅମୁଁହା କୂଅକୁ ଖୋଜି ଖୋଜି ସେଇଠେଇଁ ପହଞ୍ଚିଲା

ତେଣେ କଅଣ ହେଲା ନା ଏ ସାଧୁତଟୋକା କୂଅରୁ ବାହାର ଆସି ରାଜାଝିଅଠେଇଁ ତ ଡାହାଣୀ ଛୁଡ଼େଇ ଦେଲା , ତେମା ଆଉ ମଲା ନାହିଁ କି ଡାହାଣୀର ଆଶା ପୂରିଲା ନାହିଁ । ଦିନାକେତେ ବାଦ୍ ତ ଦେଶୁ ପୋଖରୀ ହୁଦଳକୁ ସାଧୁତ ପୁଅ ସେ ଯାଏ ମାଲ୍ୟାକି ଖୋଲି କରି ନେଲା । ପିତାଶୁଣୀ ଯାଇ ଦେଖିଲା ବେଲକୁ ମାଲମତା ସବୁ ଗଲାଣି ! କି ଭଉଣୀମାନ ହାଇ ହାଇ ହେଲେ । ଡାହାଣୀ ପୀତାଶୁଣୀକୁ ତ କାକ ଚଉଡ଼ ଜଣା । ସେ ପଛରେ ଜାଣିଲେ ଯେ ଏ ସାଧୁତ ଟୋକାର ଏ ସବୁ କାମ , ଯା ବିରୁଦ୍ଧ ମନରେ ରାଗ ରଖିଥାଆନ୍ତି , ବିରୁଦ୍ଧ ଥାଆନ୍ତି , ଏ କମିତ

ଆମ ହାତରେ ଦିନେ ପଡ଼ନ୍ତା କି, ଯାହାକୁ ସେ ଦିନ ଦେଖିଲା କାମ କରନ୍ତେଇଁ । ଯାହା ବିଚାରି କରି ସେ କୂଅ ଭିତରେ ଥାଆନ୍ତି । ଏ ବାହ୍ମଣୀଟୋକା ତ ପଳାଏ ପାରିବ ବୋଲି ନିମିତ୍ତ ସେ ଅନ୍ଧାର କୂଅ ଭିତରକୁ ନ ଜାଣିଲା ହୋଇ ଯେପରି ପଡ଼ନ୍ତି ନିମିତ୍ତ ଏ ବାହ୍ମଣୀ ପୀତାମ୍ବରୀ ଦେଖିଲେ ଯେ ତା ହାତରେ ଏହି ଗଛର ଫଳ ବେଲଗୋଲା ଖଣ୍ଡିଏ ଖଣ୍ଡିଏ ଅଛି । ଏ ଦିହେଁ କହିଲେ, ଆରେ ଏଇତ ସେ, ଯାହା କହି ଦିହେଁଯାକ ବାହ୍ମଣୀପିଲାର ହାତଁ ଛଡ଼ି ଦେଲେ, ତଣ୍ଟି କାଟି କରି ତା ଲହୁ ଚୋପି ଲେଖାଏଁ ପିଇଲେ, ତା ମାଉଁସ ହାଡ଼ଗୁଡ଼ାକ ଟିକିକ୍ରୁ ଦେଇ ଖିଆ ପର୍ଯ୍ୟନ୍ତ, ରହୁମାହୁ କରି ରେକେଟି ରାକେଟି ଗୋବେଇ ଗୋବେଇକରି ଖାଇଲେ ।

ଷାଫୁଟଟୋକା ତହିଁ ଆରଦିନ ସକାଳୁ ଉଠି ଦେଖିଲା ବେଳକୁ ସଙ୍ଗାତ କୁଆଡ଼େ ଚଲ୍ । କେତେ ଆଡ଼କୁ କେତେ ମଣିଷ ପଠାଇଲା, ଆପେ ବାଇବିଣ୍ଟୁ ପରି ହୋଇ କେତେ ଆଡ଼ ବୁଲିଲା, ସଙ୍ଗାତକୁ ପାହ୍ମଣୀ ଗୀତାଶୁଣୀ ତ ଖାଇ ସାରନ୍ତିଣି, ତା'ର ଆଉ ପତା ଅଛି ଯେ, ଏ ପାଇବ ? ଦିନାକେତେ ମନରେ ଦୁଃଖ କଲା, ରହିଲା । ଅନେକଦିନ ଗଲାରୁ ସଙ୍ଗାତ କଥା କୁଆଡ଼େ ମନରୁ ପାସୋରି ଗଲା, ରଜା ଜେମା ସାଙ୍ଗେ ବାଇ ହୋଇ ଘର ଦୁଆର କଲା, ରହିଲା, ମୁଁ ଗଲି ଯେ, ମତେ କଥା କହିଲା ନାହିଁ । ମୋ କଥାଟି ଏତିକି, ଫୁଲ ଫୁଟେ କେତକୀ ।

# ଦେଶ ଗଣ୍ଡିଆ, କଟକ ଗଣ୍ଡିଆ, ଗଣ୍ଡି ଗଣ୍ଡିଆ

କୁଞ୍ଜବିହାରୀ ଦାଶ

ଜଣା ଗଡ଼ୁଛି, ପାଣିଆ ଗୁଳିକାରେ ପୃଥିବୀ ଝାଲଝାଲିଆ ହେଉଛି ; ଦେଶଗଣ୍ଡିଆ ଆଉ କଟକଗଣ୍ଡିଆ ରାସ୍ତାର ଦି' ଦିଗରୁ ଆସି ଗୋଟିଏ ଗଛମୂଳେ ପାହୁଞ୍ଚିଲେ। ଦେଶଗଣ୍ଡିଆ ମୁଣ୍ଡରେ ବସ୍ତାଏ ଗୋଇଁଠି, କଟକଗଣ୍ଡିଆ ମୁଣ୍ଡରେ ବସ୍ତାଏ ଖାର ! ଦେଶଗଣ୍ଡିଆ ଡାକ ମାରିଲା – ହେ ଭାଇ! କଣ ନେଉଚ ? କଟକଗଣ୍ଡିଆ ଉତ୍ତର ଦେଲା – ମୁଁ କଉଡ଼ି ନେଉଚି। ନବ ? କଟକଗଣ୍ଡିଆ ପଚାରିଲା – ତୁମେ କର୍ପୂର ନବ ? ଦୁହିଁଙ୍କ ରାଜିଖୁସିରେ ବୋଝ ବଦଳ ହୋଇଗଲା। ଦେଶଗଣ୍ଡିଆ ମନେ ମନେ ହସିଲା– ଦେଲି ଛିଡ଼ାକାଟି। କଟକଗଣ୍ଡିଆ ହସି ହସି ଭାବିଲା– ଅଧା ଯୋଡ଼ିଥିବ, ଶୁଣା ଖାଉଥିବ। ଦେଶଗଣ୍ଡିଆ ଘରେ ପାହୁଞ୍ଚି ଭାରିଯାକୁ କହିଲା– ଆଲୋ, ଭଗବାନ୍ ଦେଲାବେଳେ ଏମିତି ଦିଅନ୍ତି, କଚେ ପୁଅ ବାର, ଦେଖ କେମିତି ଗୋଇଁଠି ବସ୍ତାଏ ଦେଇ କର୍ପୂର ବସ୍ତାଏ ଠକି ଆଣିଚି। କଟକଗଣ୍ଡିଆ ଭାରିଯାକୁ କହିଲା – ଆଲୋ ବୁଝି ଥିଲେ ବାପଘରେ ପୁଅ, ଦେଖ କେମିତି ଖାର ବସ୍ତାଏ ଦେଇ କଉଡ଼ି ବସ୍ତାଏ ଠକି ଆଣିଚି।

ପିଲାଏ ଆବାକ୍ ହୋଇ ଚାହୁଁଛନ୍ତି, ବସ୍ତା ଖୋଲା ହେଲା। ଖାର ଆଉ ଗୋଇଁଠି, ଠକଙ୍କ ମୁହଁ କେଣ୍ଡା ପଡ଼ିଗଲା, ଭାରିଯାଏ ଚିଙ୍ଗାରିଲେ – ତୁମକୁ ଟିକିଏ ଲାଜ ନାହିଁ ? କାହାକୁ କହିବେ ? ମନମାରି ରହିଲେ।

ଏମିତି କେତେକାଳ ଗଲା। ହାଟରେ ପୁଣି ଦୁହିଁଙ୍କର ଭେଟ ହେଲା। ଦୁହେଁ ହସା ହସି ହେଲେ।

ଠକ ଠକର ସାଥୀ , ଦୁହେଁ ଦୁହିଁଙ୍କ ପାଖରେ ମାହାର୍ଜ ହେଇ ମିତ ବସିଲେ ; କହିଲେ ଦେଖିବା ଦେଖି ଏଥର କିଏ ଆମକୁ ବଳିପିବ ? ବାଟରେ , ଘାଟରେ , ହାଟରେ ନାଟରେ ଯାହାକୁ ଦେଖିବା ରାମାନନ୍ଦୀ କାଟିଦେବା , ମୁଣ୍ଡରୁ ଚନ୍ଦନ ଟୋପା , ଆଖିରୁ କଜଳଗାର ପୋଛାଇଦେବା । ଏମିତ ଝିଡ଼ାଝଡ଼ରେ ହୋଇ ବାହାରିଲେ ।

ପହଚିଲେ ଦୁହେଁ ଜଣେ ବୁଢୀ ଘରେ ପହୁଞ୍ଚିଲେ । ଚମ ଧୁଡୁ ଧୁଡୁ ହାଡ଼ କୁଡୁ କୁଡୁ , ହାତରେ ଯଷ୍ଟିଏ ବାଡ଼ି ; ନଇଁ ନଇଁ ବୁଢୀ ଖୁପୁରୁ ଖୁପୁରୁ ଚାଲୁଛି । ସାଷ୍ଟାଙ୍ଗ ଦଣ୍ଡବତ ହୋଇ ଏମାନେ କହିଲେ , " ଅପା ଲୋ , ତୁ ଆଉ ଆମକୁ ଚିହ୍ନିବୁ କାହିଁକି ? ପାହୁଲପାଳ ଦିନୁ ତ ଇଆଡ଼େ ରହିଲୁ , ଆମ ଦୁଆରେ ଦିନେ ହେଲେ ପାଦଧୂଳି ପଡ଼ିଲା ନାହିଁ । ଏବେ ଶୁ'ଲେ , ପୁଅର ବେହେଘର ହେଉଛି , କରିବା ଧରିବାକୁ ଆଉ କିଏ ଅଛି ? ତୁ ନ ଗଲେ ନ ହୁଏ ।"

ବୁଢୀ ବାପାଘର ଦୂର ଦେଶରେ । ସେ ପାହୁଲପାଳ ଆସିଛି ତ ଆସିଛି । ବୁଢୀ ଯୁଆଙ୍କୁ ଭାଇ ମାନେ କରି କେତେ କାହୁନା ପକେଇଲା , ଦୁଃଖ ସୁଖ ହେଲା , ଗାଧୋଇ ନିବା ଲାଗି ସୁନାଗିନାରେ ମାଲପା ଦେଲା , ପୋଖରୀ ଦେଖେଇ ଦେବା ପାଇଁ ପୁଅକୁ ସାଙ୍ଗରେ ପଠାଇଲା ।

ଠକ ଦୁହେଁ ତେଲ ଲଗାଇଲେ , ଗିନାଟି କିଆବାଡ଼ରେ ଲୁଚେଇ ଦେଲେ , 'ନେଲା' ରେ 'ନେଲା' ରେ ପାଟି କଲେ । ବୁଢୀଙ୍କ ଆସି କହିଲେ , " ଆଲୋ ଅପା , ଗିନାଟା କୁଆ ନେଇଗଲା ।" ପୁଅ ସବୁ

ଦେଖିଲା, ମାଆଙ୍କୁ ରାମ କି ବସ୍ତୁ କହିଲା ନାହିଁ । ବୁଢୀ କୋହ କଗୁଡ଼ ହୋଇ ରହିଲା, ନିମିତ୍ୟକୁ ଗଲା ନାହିଁ, ଖାଲି କଥା ରଖିବାକୁ ପୁଅକୁ ପଠାଇଲା । ପୁଅ ଠକଙ୍କ ସଙ୍ଗେ ଘୋଡାରେ ବସି ଗଲା ।

ବାଟରେ ସେମାନେ କହିଲେ, "ଭଣଜା, ଭୋକରେ କରଡ଼ି ଜଳିଲାଣି, ତୁମ ଦେହରୁ କିଛି ଅଳଙ୍କାର କାଢି ବିକି ଜଳଖିଆ ଆଣ ।" ଭଣଜା ଭାରି ହୁସିଆର, ଗିନା କଥାରୁ ନ୍ୟାଙ୍କ ହାବଭାବ ଦେଖେଇ ଜାଣିଲାଣି । ଘୋଟାଏ ଟିକର ପାଇଁ କହିଲା, "ମାମୁଁ ! ଏ ତ ଛୋଟ କଥା, ଏଥିପାଇଁ ଅଳଙ୍କାର ବିକିବା କାହିଁକି ? ମୋ କଥା ମାନି ଚଳିଲେ ଢେର ଢେର ଖାଇବାକୁ ମିଳିବ ; କଥାଟା କି ଜେମିତି, କିଛି ନୁହେଁ, କେବଳ 'ଏକ୍ କି 'ହନ୍' ପଚାରିଲେ, କହିବ 'ହନ୍' । ସାରୁ ଭିତରେ ମାରୁ ଅଛି ବୋଲି କଣ ଏ ଜାଣନ୍ତି ? ହିଁ 'ଟାଏ ମାରିଦେଲେ । ଏଣେ ଭଣଜା ଜଣେ ସାହୁକୁ ଯାଇ କହିଲା, "ମହାଜନେ ! ଦି ଜଣ ହଳିଆ ବିକି ଆଣିଛି ।" ମହାଜନ ଦାମ୍ ଦେଇ ସାରି ପଚାରିଲା, "ଏକ୍ କି ହନ୍ ?" ଏମାନେ କହିଲେ "ହନ୍ ।"

ଏତିକରେ ବିକା କିଣା ଶେଷ ହେଲା । ଭଣଜା ଟଙ୍କା ଗଣି ଘେନି ଖସିଗଲା । ଠକ ଦି ଜଣ ବନ୍ଧନରେ ପଡ଼ି ରହି ବୁଝିଲେ — ଭଣଜା ବୋଲି ଯେ ଜୁଟିଛି ସେ ହେଉଛି ଠକଙ୍କ ଗୁରୁ । ଏମାନେ ମହାଜନକୁ କହିଲେ, "ଭାଇ ! ଆମେ ପ୍ରକୃତରେ ହଳିଆ ନୋହୁଁ, ସେ ଆମକୁ ଜଳଖିଆ ଖାଇବା ନାଆଁରେ ଡାକି ଆଣି ବିକି ଦେଇଗଲା । ମହାଜନ କହିଲା, "ଏବ୍ଣି ମୋ ଟଙ୍କା କିଏ

ହେବ ?" ଏମାନେ କହିଲେ, " ଆମେ କିଛି ଜାଣି ନାହୁଁ। ବହି ନେଇରା ନମସ୍ତେ, ହେବାରୁ ମହାଜନ ତାକୁ ଖୋଜିବାକୁ ଲୋକ ପଠାଇଲା। ଠକ ଦି' ଜଣ ମହାଜନର ଲୋକ ସଙ୍ଗେ ଗଲେ।

ଏଣେ ଘୋଡ ଟ୍ରପଟେଇ ଭଣଜା ଆଉ ଗୋଟିଏ ଗାଆଁରେ ପହଞ୍ଚିଲା। ସେଠି ଗୋଟିଏ ଗୁଡିଆ ଦୋକାନ; ଖଜା, ମିଠେଇ, ଜଲେବି, କୋରା ସଜା ହୋଇ ରଖା ହୋଇଛି, ପିଲାଟିଏ ବିକୁଛି। ଭଣଜା ସେଠି ପହଞ୍ଚି ମାନଇଛା ଦି'ହାତିଆ ଖଜା ମିଠେଇ ଗିଳିଗଲା। ପିଲା ପାଟି କରିବାରୁ କହିଲା, " ବାଆକୁ କହିବୁ, ମାଛି ଖାଇଗଲା, ସେ କିଛି କହିବ ନାହିଁ।" ପିଲା ବାପକୁ କହିବାକୁ ଦୌଡିଲା, ଏଣେ ଖଜା ମିଠେଇ ଖାଇ କିଛି ବାଟକୁ ଯାଇ ଭଣଜା ବାଟେ 'ଚୁ' କଲା।

ଭଣଜା ଯାଉଁ ଯାଉଁ ଗୋଟିଏ ବୁଢୀଙ୍କୁ ଭେଟିଲା। ବୁଢୀ ଆଗରେ ଗୋଟିଏ ଝିଅ, ଗୋଲ ବରଫୀ, ଝିଅ ଉପରେ ପାଟ ଉଢ଼ଣା ଦେଇଛି, ମୁହଁଟି ଢଙ୍କା ଗୁନ, ଚାହିଁଲେ ଚାହିଁ ଥିବ, ଆଖିରେ ପଲକ ପଡିବ ନାହିଁ। ଭଣଜା ହଠାତ୍ ତାକୁ ଟେକି ନେଇ ଘୋଡାରେ ବସେଇ ଟପାଟ ମାରିଲା। ବୁଢୀ ପାଟି କରିବାରୁ କହିଲା, "ମୋ ନାଆଁ ଜ୍ୱାଇଁ।" ବୁଢୀ ବିକଳରେ ଡାକ ପକାଇଲା — ଧାଇଁ ଆସ ହୋ, ମୋ ଝିଅକୁ ନେଇଗଲା। କିଛି ଲୋକ ଜମିଲେ — କଥା କଣ ? ବୁଢୀ କହିଲା, ଆହୋ, ମୋ ଝିଅକୁ ଜ୍ୱାଇଁ ଘେନି ପଳାଇଗଲା ! ଲୋକେ କହିଲେ, " ଝିଅ ତ ଜ୍ୱାଇଁ ଘରକୁ ଗଲା, ସୁଖରେ ରହିବ, ସବୁ କାଳେ କ'ଣ ତୋ ଘରେ ଥାଆନ୍ତା ?

ମିଛରେ ଗୋଟାଏ ବୋବାଳି ଛାଡ଼ନ୍ତି କାହିଁକି ?

ବଣ ବାଟ ପଡ଼ିଲା, ଗୋଟେ ଭାଲୁ ଭଲ ଶୋଇ ଥିଲା, ଭଣଜାକୁ ଦେଖି ଚମକି ଆସିଲା । ଭଣଜା ଦେହରେ ଗୋଟାଏ ପୋତରେ ବଳ, ସେ ଭାଲୁ ସାଙ୍ଗେ ଝଟେଣ୍ଟ, ପଟେ ଯୁଝି କଲା । ଭାଲୁ ହାଲିଆ ହୋଇଗଲା ପରେ ତା ବେକକୁ ଯାବୁଡ଼ି ଧରିଲା । ତା ପରେ ତା ଥୋମଣିକି ଭୂଇଁରେ ଘଷିଲା । ଏଇ ଲଟେଇ ଝଟେଇରେ ତା ବନ୍ଧନରୁ ଗୋଟି ହୋଇ ଟଙ୍କା ବୁଣିଗଲା । ଜଣେ ମହାଜନ ସେ ବାଟେ ଯାଉଥିଲା । ଟଙ୍କା ଦେଖି ତାର ଲୋଭ ହେଲା । ପଚାରିଲା — "କିଓ, ଭାଲୁ ମୁହଁଟାକୁ କାହିଁକି ଘଷୁଚ ? ଏ ଏତେ ଟଙ୍କା କୁଆଡୁ ଆସିଲା ?" ଭଣଜା କହିଲା, "ଏ ମୋର ପୋଷା ଭାଲୁ, ତାକୁ ଘଷିଲେ ଏ ଟଙ୍କା ଝରେ ।" ମହାଜନ କହିଲା, "ବିକିବ ?"

ଭଣଜା କହିଲା, "ସେମିତି ଗ୍ରାହକ ମିଳିଲେ ।"

"ଦବାନବା କେତେ ?"

"ହଜାରେ ଟଙ୍କାରୁ ପଇସା ପାହୁଲାଏ ଊଣା ହେଲେ ଦେବି ନାହିଁ ।" ମହାଜନ ଟଙ୍କା ଗଣିଦେଲା । ଭଣଜା ମହାଜନକୁ ଭାଲୁ ଧରେଇ ସବୁ ଟଙ୍କା ଗୋଟେଇ ପୋଟେଇ ଘେନି ଚଲ୍ ।

ତା ପରେ ଭେଟିଲା ଜଣେ ଯୋଗୀ, ପାଟପାଟମୁହୀ ଷୁଣ୍ଟିଆ ଜଟି ବସିଛି । ଭଣଜା ତା ଆଗରେ ଖଜା ଥୁଆଇଲା ; ଯୋଗୀ ହାତ ପତାଇଲା ତାକୁ ଗୋଟିଏ ଦେଲା । ତା ମନ ବୋଧ ହେଲା ନାହିଁ । ଆଉ ଗୋଟିଏ ମାଗିଲା । ଭଣଜା କହିଲା, "ଯାଅ, ସେ ପାହାଡ଼ ପାଖ ଗଛମୂଳେ କେତେ ପାଚିଲା ଖଜା ଝଡ଼ିଛି,

ଗୋଟେଇ ଆଣିବୁ ।" ଖୀଜା ଗଛରେ ପଂଛଟି ଶୁଣି ଖୁସି ହୋଇ ଧୋବା ଡୋଳବାକୁ ଗଲା । ଏଣେ ଭକଣା ପାଟପୀତାମ୍ବରୀଙ୍କ ଗୋଟେଇ ନାହିଁ ଜାଣି ଘୋଡା ଦଉଡାଇ ଗୁଳିଗଲା, ଗୋଟେ ଗଛ ତଳରେ ସେ ସବୁ ବାନ୍ଧିଲା, ତା ମୂଳରେ ଠିଆ ହୋଇ ବଡ ପାଟିରେ କହିଲା, "ପାଟପୀତାମ୍ବରୀ ଫୁଟ ଫୁଟ ।"

ସେ ବାଟେ ଜଣେ ମହାଜନ ଯାଉଁ ଯାଉଁ ପଚାରିଲା — ଭାଇ ! କଣ କରୁଛୁ କିଓ ? ଭକଣା କହିଲା, "ବୁଝିଲ, ଏ ଗଛର ଅଦ୍ଭୁତ ମହିମା । ଏହା ମୂଳରେ ନାଚି ନାଚି 'ପାଟପୀତାମ୍ବରୀ ଫୁଟ୍' କହିଲେ ପତେ ପତେ ଦେଖ ବାହାରେ, ଭଲ ଭଲ ପାଟମଠା ଫୁଲ ପରି ଫୁଟିଯାଏ ।"

ମହାଜନର ଲୁଗା ଗୋଦାମ । ଲୁଗାପଟା ଲୋଭରେ ତେରହଜାଏ ଟଙ୍କା ଦେଇ ଗଛଟାକୁ କିଣିଲା । ଭକଣା ପାଟମଠାଙ୍କ ନେଇ ଘୋଡାରେ ଚଢ଼ି ପଳାଇଗଲା । ଏଣେ ମହାଜନ 'ପାଟପୀତାମ୍ବରୀ ଫୁଟ୍' ବୋଲି କହି କହି ଥକିଲା, ଖଣ୍ଡିଏ ହେଲେ ଲୁଗା ଫୁଟିଲା ନାହିଁ । ତା ପରେ ମୁଣ୍ଡରେ ହାତ ଦେଇ "କଣ ହେଲାରେ" ବୋଲି କହି ବସି ପଡ଼ିଲା ।

ଏଣେ ଠକ ଦୁଇଜଣ ମହାଜନର ଲୋକଙ୍କୁ ସଙ୍ଗରେ ନେଇ ଭକଣାକୁ ଖୋଜି ଖୋଜି ଗୁଡ଼ିଆ ଦୋକାନରେ ପହଞ୍ଚିଲେ । ଗୁଡ଼ିଆକୁ ସଙ୍ଗରେ ନେଇ ବୁଢୀ ପାଖରେ ପହଞ୍ଚିଲେ, ବୁଢୀଙ୍କି ସଙ୍ଗେ ନେଇ ଭାଲୁ ପାଖେ ପହଞ୍ଚିଲେ । ମହାଜନକୁ ସଙ୍ଗେ ନେଇ ଧୋବା ପାଖରେ ପହଞ୍ଚିଲେ, ଧୋବାକୁ ସାଥିରେ ନେଇ ସମସ୍ତେ ଲୁଗାମହାଜନ ପାଖେ ପହଞ୍ଚିଲେ । ତାକୁ ସଙ୍ଗରେ ନେଇ ଭକଣା

ଘରେ ପହଞ୍ଚିଲେ, ତାଙ୍କୁ ଏକାମି ଜିନିଷ ମାଗିଲେ । ଭଣଜା କହିଲା, "ଭାଇ, ଜିନିଷପତ୍ର ଗୋଟି ଗୋଟି କରି ଫେରାଇ ଦେଇ, ସେଥିରେ ମୋର ଟିକେ ଲୋଭ ନାହିଁ । ମାଲି କହନ୍ତିକ ଦେଖିବା ପାଇଁ ଘେନି ଆସିଥିଲି ।"

କଅଁଳ କଥାରେ ସମସ୍ତେ ଭୁଲିଗଲେ — ହଁ, କହନ୍ତି ଲୋଭେଇବେନେ, ଫେରାଇ ଦେବ ନାହିଁ କି ?

ଏଣେ ଏକ କଣ କଲା ନା, ଯାଇ ଗାଁ ମାଲିକକୁ ଡାକିଲା, କିଛି ଟଙ୍କା ଦେଲା, କହିଲା, "ତୁ ଢେଙ୍କୁରା ଦେ — କହ ରଜାଙ୍କ ଆଜ୍ଞା, ଯାହା ଘରେ ବିଦେଶୀ ଅଛି, ଆଣି ହାଜର କର, ଶୂଳି ଦିଆଯିବ ।" ଯା ଶୁଣି ସମସ୍ତେ ଚଟକା । କଣ କରିବା ? କେମିତି ବୁଆଡ଼େ ପଳାଇବା ? କାହାକୁ ପଚରା ଉଚରା ନାହିଁ । ସେ ଯାହା ଖଟିଆରେ ଶୋଇ ଛନ୍ତି ।

ଦୁଇ ଏକ ଘଣ୍ଟାର ମରିକି ଆସି ନିଃଶ୍ୱାସ ମାରିଲେ । ଓହୋ ! ଜୀବନଟା କୌଣସି ମତେ ରହିଗଲା ।

ଦେଶୀଗଣ୍ଡିଆ କହିଲା, "ଭାଇ, ମୁଁ ଦେଶୀଗଣ୍ଡିଆ, ତୁ କଟକଗଣ୍ଡିଆ, ଯାହାକୁ ଭଣଜା କଲେଇଁ ସେ ହେଉଛି ଗଣ୍ଡିଆରେ ସାର — ଗଣ୍ଡି ଗଣ୍ଡିଆ । ସେ ଥିବା ଯାକେ ଆମ ଭେଉଷା ଚଳିବ ନାଇଁ । ଆମେ ତାଳେ ତାଳେ ଗଲେ ସେ ପତ୍ରେ ପତ୍ରେ ଯାଉଛି ।"

ଗଣ୍ଡିଗଣ୍ଡିଆ ବୁଦ୍ଧିର ଟିଅଙ୍କ ହବା ହୋଇ ମହା ସୁଖରେ ରହିଲା । ମୁଁ ଗଲାରୁ ହସି ହସି କହିଲା, "ଏକଂ ଏକ ଏକାମ୍ଭେ ।"

